# ବିଦଗ୍ଧ ଚିନ୍ତାମଣି ପରିଚୟ

ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି, ଏମ୍. ଏ., (ପି. ଏଚ୍. ଡି.)

ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ପ୍ରକାଶକ :

ସହଦେବ ପ୍ରଧାନ

ଫ୍ରେଣ୍ଡସ୍ ପବ୍ଲିଶର୍ସ

ବିନୋଦ ବିହାରୀ, କଟକ-୨

ଲେଖକ :

ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି

ଚତୁର୍ଥ ସଂସ୍କରଣ : ୧୯୮୭

ମୁଦ୍ରାକର :

ନନ୍ଦକିଶୋର ପ୍ରେସ

ଚାନ୍ଦନୀଚୌକ, କଟକ-୨

ମୂଲ୍ୟ—୮ ଟଙ୍କା

# ସୂଚନା

"ବିଦଗ୍ଧ ଚିନ୍ତାମଣି" ପ୍ରାଚୀନ ଓଡ଼ିଆ କାବ୍ୟଜଗତରେ ଏକ ଅମୂଲ୍ୟ ସାହିତ୍ୟ-ରତ୍ନ ଭାବରେ ସୁପରିଚିତ ଏବଂ ଆଦୃତ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅଭିମନ୍ୟୁ ସାମନ୍ତସିଂହାର ରୀତିଯୁଗର ଅନ୍ୟତମ ରସିକ ତଥା ଭକ୍ତକବି । ତାଙ୍କର କବିପ୍ରତିଭା ଦୀନକୃଷ୍ଣ, ଉପେନ୍ଦ୍ର ଓ କବିସୂର୍ଯ୍ୟଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ବହୁକାଳ ଧରି ବିଦଗ୍ଧ ଚିନ୍ତାମଣି ବିଶ୍ୱବିଦ୍ୟାଳୟ ଓଡ଼ିଆ ପାଠ୍ୟକ୍ରମରେ ସ୍ଥାନଲାଭ କରିଥିଲେ ହେଁ ଏ ପର୍ଯ୍ୟନ୍ତ କାବ୍ୟର ପୂର୍ଣ୍ଣାଙ୍ଗ ଆଲୋଚନା ପ୍ରକାଶ ପାଇ ନ ଥିଲା । ଏ ପୁସ୍ତକ ତାହାର ପ୍ରାରମ୍ଭିକ ପଦକ୍ଷେପ ମାତ୍ର ।

"ବିଦଗ୍ଧ ଚିନ୍ତାମଣି ପରିଚୟ" ସମାଲୋଚନା ଗ୍ରନ୍ଥରେ କାବ୍ୟର ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ଦିଆଯାଇ ସମଗ୍ର କାବ୍ୟର ଆଲୋଚନା ନିମିତ୍ତ ଚେଷ୍ଟା କରାଯାଇଛି । ଏହି ଆଲୋଚନାଗ୍ରନ୍ଥ ବିଶ୍ୱବିଦ୍ୟାଳୟଗୁଡ଼ିକର ଛାତ୍ରଛାତ୍ରୀ ତଥା ସୁଧୀ ସାହିତ୍ୟିକମାନଙ୍କଦ୍ୱାରା ଯଦି କିଞ୍ଚିତ ଆଦରଲାଭ କରେ, ତେବେ ଲେଖକ ନିଜକୁ ଧନ୍ୟ ମନେକରିବ ।

ଲେଖକ

# ସୂଚୀପତ୍ର

# ବିଦଗ୍ଧ ଚିନ୍ତାମଣି

## ପୂର୍ବାଭାଷ

ଓଡ଼ିଆ କାବ୍ୟଯୁଗର ତିନି ପ୍ରଧାନ କବି ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ମଧ୍ୟରେ ଅଭିମନ୍ୟୁ ହେଉଛନ୍ତି କାବ୍ୟଯୁଗ ଶେଷଭାଗର ସର୍ବଶ୍ରେଷ୍ଠ ଖ୍ୟାତକବି । "ରଏଲ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ" ପତ୍ରିକାରେ "ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ" ପ୍ରବନ୍ଧରେ ମନମୋହନ ଚକ୍ରବର୍ତ୍ତୀ ଅନ୍ୟାନ୍ୟ କବିଗଣଙ୍କ ମଧ୍ୟରେ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଓ ତାଙ୍କର ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ସୁବିସ୍ତୃତ ଜୀବନୀ ପ୍ରକାଶ କରିଥିଲେ । ଏହି ଆଲୋଚନାଟି ଅଭିମନ୍ୟୁଙ୍କ ସମ୍ପର୍କରେ ହେଉଛି ପ୍ରାଚୀନତମ ଐତିହାସିକ ଆଲୋଚନା । ଏହା ପରେ ଓଡ଼ିଆର ବିଶିଷ୍ଟ ସାହିତ୍ୟିକ, ଆଲୋଚକ ମୃତ୍ୟୁଞ୍ଜୟ ରଥ 'ଉତ୍କଳ ସାହିତ୍ୟ'ରେ ଅଭିମନ୍ୟୁଙ୍କ ସମ୍ବନ୍ଧୀୟ ଗବେଷଣାପୂର୍ଣ୍ଣ ଆଲୋଚନା କରିଥିଲେ ଓ ତାହା ଉକ୍ତ ପତ୍ରିକାର ୧୩୨୨ ସାଲ ଅଷ୍ଟାଦଶ ଭାଗର ବିଭିନ୍ନ ସଂଖ୍ୟାରେ ପ୍ରକାଶ ପାଇଥିଲା । ମୟୂରଭଞ୍ଜରୁ ପ୍ରକାଶ ପାଉଥିବା 'ଉତ୍କଳ ପ୍ରଭା' ପତ୍ରିକାରେ (୩ୟ ଭାଗ, ୫ମ ସଂଖ୍ୟା) ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କର ସନ୍ଦର୍ଭ 'ପ୍ରାଚୀନ କବିଙ୍କ ବୃତ୍ତାନ୍ତ'ରେ ଅଭିମନ୍ୟୁ ସାମନ୍ତସିଂହାରଙ୍କ ସମ୍ବନ୍ଧୀୟ କେତେକ ବିବରଣୀ ମଧ୍ୟ ସ୍ଥାନଲାଭ କରିଛି । ଏତଦ୍‌ବ୍ୟତୀତ ବିଜୟଚନ୍ଦ୍ର ମଜୁମଦାର ଓ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି ଆଲୋଚକଗଣ ଅଭିମନ୍ୟୁଙ୍କର କାବ୍ୟ ତଥା ଜୀବନୀ ଆଲୋଚନା କରି କେତେକ ନୂତନ ଆଲୋକ ପ୍ରଦାନ କରିଅଛନ୍ତି । ପ୍ରାଚୀ ସମିତି ତରଫରୁ ବିଦଗ୍ଧ ଚିନ୍ତାମଣି ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସୁସମ୍ପାଦିତ ହୋଇ ୧୯୨୫ ମସିହାରେ ପ୍ରକାଶଲାଭ କଲା । କିନ୍ତୁ ତାହା ପୂର୍ବରୁ ଗୌରିଶଙ୍କର ରାୟଙ୍କ ଦ୍ୱାରା ଯେଉଁ ବିଦଗ୍ଧ ଚିନ୍ତାମଣି ପ୍ରକାଶ ପାଇଥିଲା, ତାହାର ପାଠରେ ବହୁ ପ୍ରମାଦ ରହିଥିଲା । ସେଇଥିପାଇଁ ପ୍ରାଚୀ ସମିତି ପ୍ରକାଶିତ ବିଦଗ୍ଧ ଚିନ୍ତାମଣି

ଏବେ ବି ଉତ୍କୃଷ୍ଟତମ ସମ୍ପାଦିତ ଗ୍ରନ୍ଥ ଭାବରେ ଓଡ଼ିଆ ସାହିତ୍ୟରେ ସ୍ଥାନଲାଭ କରିଛି । ଊନବିଂଶ ଶତକର ଶେଷଭାଗରେ ଓଡ଼ିଆ ଭାଷାର ପ୍ରତିଷ୍ଠା ନିମିତ୍ତ ଏକ ଗଣଆନ୍ଦୋଳନ ଦେଶରେ ଦେଖାଦେଇଥିଲା । ଫଳରେ ଏହି ସମୟରେ କର୍ମଯୋଗୀ ଗୌରୀଶଙ୍କରଙ୍କ ଚେଷ୍ଟାରେ ବହୁ ପ୍ରାଚୀନ କାବ୍ୟକବିତା ଯାହା ତାଳପତ୍ର ପୋଥିରେ ପ୍ରଚଳିତ ଥିଲା, ସେଗୁଡ଼ିକ କଟକ ପ୍ରିଣ୍ଟିଂ କମ୍ପାନୀଙ୍କଦ୍ୱାରା ମୁଦ୍ରିତ ହୋଇ ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବ ପ୍ରତିପାଦିତ କଲା ।

ଗୌରୀଶଙ୍କରଙ୍କ ସମ୍ପାଦିତ ଉତ୍କଳ ଦୀପିକାର ପୃଷ୍ଠାରୁ ଜଣାଯାଏ ଯେ ଖ୍ରୀ: ୧୮୭୫ ମସିହାରେ 'ସଟୀକ ବିଦଗ୍ଧ ଚିନ୍ତାମଣି' ପ୍ରିଣ୍ଟିଂ କମ୍ପାନୀଙ୍କ ଆନୁକୂଲ୍ୟରୁ ପ୍ରକାଶ ଲାଭ କରିଥିଲା ।

## କବି ଜୀବନୀ—

ମନମୋହନ ଚକ୍ରବର୍ତ୍ତୀ କବିଙ୍କର ଯେଉଁ ଜୀବନୀ ପର୍ଯ୍ୟାପ୍ତ ଆଲୋଚନା କରିଥିଲେ ତାହାର ଉପରେ ଶ୍ରୀ ମୃତ୍ୟୁଞ୍ଜୟଙ୍କର ଆଲୋଚନା ନିର୍ଭର କରିଛି । ଗୋବିନ୍ଦଚନ୍ଦ୍ର ମହାପାତ୍ର ଅଭିମନ୍ୟୁଙ୍କ ସମ୍ବନ୍ଧରେ ଉତ୍କଳ ପ୍ରଭାରେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ତହିଁରେ ସେ ଲିପିବଦ୍ଧ କରିଅଛନ୍ତି ଯେ, "କବି ୧୭୬୨ରେ ହଳଦିଆ ଗାଁରେ ଜନ୍ମଗ୍ରହଣ କରିଥିଲେ । ଏହା ଯାଜପୁର ନିକଟକୁ ଆଠକୋଶ ଦୂର । ଅଭିମନ୍ୟୁଙ୍କର ଛଅବର୍ଷ ବୟସରେ ସେ ସଂସ୍କୃତ ଅଧ୍ୟୟନ ଆରମ୍ଭ କରିଥିଲେ । ଝଙ୍କଧର ନାୟକ ତାଙ୍କର ଗୁରୁ । ସେ ସିଦ୍ଧାନ୍ତ ଚନ୍ଦ୍ରିକା ଓ ସାରସ୍ୱତ ବ୍ୟାକରଣ ଟୀକା କରିଅଛନ୍ତି । ତାଙ୍କ ରଚିତ ଗ୍ରନ୍ଥ ମଧ୍ୟରେ ଭାବାବଳୀ (ଭାବବତୀ ?) ସର୍ବପ୍ରଧାନ । ଅପର ସୁଲକ୍ଷଣା, ପ୍ରେମ ଚିନ୍ତାମଣି ଓ ବିଦଗ୍ଧ ଚିନ୍ତାମଣି ମଧ୍ୟ ଉତ୍ତମ ଅଟନ୍ତି । ସେ ୫୦ ବର୍ଷ ବୟସରେ ଅର୍ଥାତ୍ ୧୮୧୦ରେ ପରଲୋକପ୍ରାପ୍ତି ହେଲେ । × × କଟକ ନଗରର ପ୍ରଥମ ଆଇନ ଅଧ୍ୟାପକ ଶ୍ରୀଯୁକ୍ତ ବାବୁ ରାଜକୃଷ୍ଣ ମୁଖୋପାଧ୍ୟାୟ ସାମନ୍ତସିଂହାରଙ୍କ ଜୀବନ ଚରିତଟି ତଦୀୟ ବଂଶୋଦ୍ଭବ ଜଣଙ୍କଠାରୁ ସଂଗ୍ରହ କରି ଆମ୍ଭଙ୍କୁ ପ୍ରଦାନ କରିଅଛନ୍ତି । (୧)

ଏହା ପରେ ମୃତ୍ୟୁଞ୍ଜୟ ରଥ କବିଙ୍କର ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ତାହାର ଉପରେ ଆର୍ତ୍ତବଲ୍ଲଭ ମହାନ୍ତି କବିଜୀବନୀ ସମ୍ବନ୍ଧରେ ବିବରଣୀ ସମୂହ ଯୋଗାଡ଼ କରିଅଛନ୍ତି । ବିଜୟଚନ୍ଦ୍ର ମଜୁମଦାର ଅଭିମନ୍ୟୁଙ୍କ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ଲେଖିଅଛନ୍ତି ଯେ, କବି ମରହଟ୍ଟାମାନଙ୍କ ରାଜତ୍ୱ ସମୟରେ ଫସଲ

---

୧ । ଉତ୍କଳପ୍ରଭା, ୩ୟ ଭାଗ, ୫ମ ସଂଖ୍ୟା "ପ୍ରାଚୀନ କବିଙ୍କ ବୃତ୍ତାନ୍ତ" ଗୋବିନ୍ଦଚନ୍ଦ୍ର ମହାପାତ୍ର ପୃ: ୧୭୫ ।

ସମ୍ବତ୍ ୧୧୭୪ ବା ଖ୍ରୀ: ୧୭୫୭ରେ କଟକ ଜିଲ୍ଲା ଅନ୍ତର୍ଗତ ଯାଜପୁର ସବ୍‌ଡ଼ିଭିଜନସ୍ଥ ବାଲିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । (୩) ଚକ୍ରବର୍ତ୍ତୀ, ମଜୁମଦାର ଓ ମୃତ୍ୟୁଞ୍ଜୟ ପ୍ରଭୃତି ଏକପ୍ରକାର ମତ ଦିଅନ୍ତି ଯେ, ଅଭିମନ୍ୟୁଙ୍କର ବଂଶଧର ଜୟପୁର ଅନ୍ତର୍ଗତ ଭାବନଗର ଓ ସେମାନେ ଯୋଧପୁରରୁ ଆସି ଖୋର୍ଦ୍ଧାର ଭୋଇବଂଶର ରାଜାଙ୍କ ନିକଟରେ ରାଜକର୍ମଗ୍ରହଣ ଭାବରେ ନିଯୁକ୍ତିଲାଭ କରିଥିଲେ । ପରେ ସେମାନେ ଭୋଇବଂଶର ରାଜାଙ୍କଠାରୁ ବରୁଣା ପ୍ରଗଣା ଅନ୍ତର୍ଗତ ବାଲିଆ ଜମିଦାରୀ ପ୍ରାପ୍ତ ହୋଇଥିଲେ । ଏହା ନିଃସନ୍ଦେହ ଯେ 'ବାଲିଆ' ଅଭିମନ୍ୟୁଙ୍କର ଜନ୍ମସ୍ଥାନ ଓ ଉକ୍ତ ସ୍ଥାନଟି ଯାଜପୁର ସବ୍‌ଡ଼ିଭିଜନର ଅନ୍ତର୍ଗତ (୪) ।

ଆହୁରି ମଧ୍ୟ ଜଣାଯାଏ ଯେ, କବିଙ୍କର ପ୍ରପିତାମହ ବନ୍ଦକା ସାମନ୍ତ ଜଣେ ରସିକ ଓ କାବ୍ୟଶାସ୍ତ୍ରଜ୍ଞ ଥିଲେ । ତାଙ୍କର ପୁତ୍ର ଗୋପାଳ ସାମନ୍ତସିଂହାର ପିତାଙ୍କ ପରି ଖ୍ୟାତି ଅର୍ଜନ କରି ନ ଥିଲେ ହେଁ ତାଙ୍କର ପୁତ୍ର ଇନ୍ଦ୍ରଜିତ୍ ସାମନ୍ତସିଂହାର ଯେପରି ବୀରପୁରୁଷ, ସେହିପରି ବୁଦ୍ଧିମାନ, ଚତୁର ଓ ରସିକ ଥିଲେ । କବି ଅଭିମନ୍ୟୁ ଇନ୍ଦ୍ରଜିତ୍ ସାମନ୍ତସିଂହାରଙ୍କ ଔରସରେ ତୁଳସୀ ଦେବୀଙ୍କ ଗର୍ଭରେ ୧୭୫୭ ଖ୍ରୀଷ୍ଟାବ୍ଦରେ ଭୂମିଷ୍ଠ ହୋଇଥିଲେ ।

ଅଭିମନ୍ୟୁଙ୍କ ଜୀବନରେ ତତ୍କାଳୀନ ପରମ ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କୁ ଗୁରୁରୂପେ ଲାଭ କରିବା ଏକ ବିଶିଷ୍ଟ ଘଟଣା । ଏହି ଘଟଣାଟି ଅଭିମନ୍ୟୁଙ୍କୁ ଜଣେ ପ୍ରଧାନ କବିରୂପେ ପ୍ରତିଷ୍ଠିତ କରିବା ନିମିତ୍ତ ଯେ ସାହାଯ୍ୟ କରିଥିଲା, କହିଲେ ଭୁଲ ହେବ ନାହିଁ । ସଦାନନ୍ଦ ଅଭିମନ୍ୟୁଙ୍କର ଉଭୟ ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ ଥିଲେ । ଯଥାର୍ଥରେ ଅଭିମନ୍ୟୁ ତାଙ୍କର ପ୍ରେମକଳା କାବ୍ୟରେ ଲେଖିଛନ୍ତି—

"ଶ୍ରୀମନ୍ତ ଶ୍ରୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
କୃପା କଲେ ପ୍ରାପତ କବିତ୍ୱ ମାର୍ଗ ସୀମା ।"

ଓଡ଼ିଶାର ଗୌଡ଼ୀୟବୈଷ୍ଣବ କବିମାନଙ୍କ ମଧ୍ୟରେ ସାଧୁଚରଣ ଦାସ ବା କବିସୂର୍ଯ୍ୟ ବ୍ରହ୍ମା ହେଉଛନ୍ତି ଅନ୍ୟତମ ପ୍ରସିଦ୍ଧ କବି । ତାଙ୍କର 'ଯୁଗଳ ରସାମୃତ ଲହରୀ', 'ଯୁଗଳ ରସାମୃତ ଭଉଁରୀ', 'ଚୈତନ୍ୟ ଚନ୍ଦ୍ରାମଣି', 'ନାମଚନ୍ଦ୍ରାମଣି',

---

୩ । Typical Selections from Oriya literature Vol. II—Edited by B. C. Mazumdar, Cal. 1923, PXXVI, XXVII

୪ । ଉତ୍କଳ ସାହିତ୍ୟ ୧୮ଶ ଭାଗ ୨ୟ ସଂଖ୍ୟା "ବିଦଗ୍ଧ ଚିନ୍ତାମଣି—ମୃତ୍ୟୁଞ୍ଜୟ ରଥ ।"

'ପ୍ରେମଚନ୍ଦ୍ରାମଣି', 'ପ୍ରେମକଳ୍ପଲତା' ଓ 'ଜଷ୍ଣା ନୀଳମଣି' ପ୍ରଭୃତି କାବ୍ୟକବିତା ପ୍ରଧାନ । ଏହି ସମସ୍ତ କାବ୍ୟରେ ଭବଧାରା ଅଭିମନ୍ୟୁଙ୍କୁ କାବ୍ୟରଚନା କରିବାରେ ବିଶେଷ ଭାବରେ ଉଦ୍‌ବୁଦ୍ଧ କରିଥିଲା । ଆର୍ତ୍ତବଲ୍ଲଭ ମହାନ୍ତି ଯଥାର୍ଥରେ ବିଦଗ୍ଧ ଚିନ୍ତାମଣିର ମୁଖବନ୍ଧରେ ଲେଖିଅଛନ୍ତି, "ମୋ ମତରେ ଯେ ଲୋକ ଉପର୍ଯ୍ୟୁକ୍ତ ଗ୍ରନ୍ଥମାନ ପାଠ କରିବ, ସେ ନିଶ୍ଚୟ କହିବ, ସାଧୁଚରଣ ଦାସଙ୍କ ଭଳି ଗୁରୁ ପାଇ ନ ଥିଲେ ଅଭିମନ୍ୟୁ କବି ରୂପରେ ଏତେ ପ୍ରସିଦ୍ଧିଲାଭ କରିପାରି ନ ଥାନ୍ତେ । ସେ ଉପଯୁକ୍ତ ଗୁରୁଙ୍କର ଉପଯୁକ୍ତ ଶିଷ୍ୟ ।" ଅଭିମନ୍ୟୁ ସାଧୁଚରଣଙ୍କ କବିତ୍ୱରେ ବଳିପଡ଼ିଥିଲେ; ଏହା କହିବା ବାହୁଲ୍ୟ ମାତ୍ର । (ବିଦଗ୍ଧ ଚିନ୍ତାମଣି : ମୁଖବନ୍ଧ—ପ୍ରାଚୀ ସମିତି ପ୍ରକାଶିତ, ପୃ. ୩ )

ଅଭିମନ୍ୟୁଙ୍କର ଗ୍ରନ୍ଥସମୂହର ପର୍ଯ୍ୟାଲୋଚନାରୁ ତଥା ଲୋକୋକ୍ତିରୁ ଜଣାଯାଏ ଯେ, "ସେ ବାଲ୍ୟକାଳରେ ସଂସ୍କୃତରେ ଅମରକୋଷ, ମେଦିନୀ, ବ୍ୟାକରଣ, ଅଳଙ୍କାର ଓ ଓଡ଼ିଆ ପୁରାଣ କାବ୍ୟକବିତାଦି ଅଧ୍ୟୟନ କରିଥିଲେ । ଉତ୍କଳର ପ୍ରାଚୀନ ସାହିତ୍ୟରେ ବିଶେଷତଃ ଭଞ୍ଜୀୟ କାବ୍ୟଜଗତରେ ତାଙ୍କର ଗଭୀର ଅଭିବେଶତା ଥିଲା । ଭାଗବତ, ବ୍ରହ୍ମବୈବର୍ତ୍ତ, ପଦ୍ମ ଆଦି ବୈଷ୍ଣବପୁରାଣ-ମାନଙ୍କରେ, ବେଦ, ଉପନିଷଦ୍, ବ୍ରହ୍ମସଂହିତା ପ୍ରଭୃତିରେ, ଗୌଡ଼ୀୟବୈଷ୍ଣବ-ଗ୍ରନ୍ଥମାନଙ୍କରେ ଓ ଜୟଦେବ, ବିଲ୍ୱମଙ୍ଗଳ, ବିଦ୍ୟାପତି, ଚଣ୍ଡିଦାସ ଆଦିଙ୍କ କୃତିରେ ସେ ପାରଦର୍ଶୀ ଥିଲେ । ଏତଦ୍‌ବ୍ୟତୀତ ବଙ୍ଗଳା, ହିନ୍ଦୀ, ମରହଟ୍ଟା ଓ ପାର୍ସି ଭାଷାରେ ଏବଂ ଯୁଦ୍ଧବିଦ୍ୟା ଓ ଆନୁଷଙ୍ଗିକ କଳାବିଦ୍ୟାରେ ମଧ୍ୟ ତାଙ୍କର ପ୍ରବେଶ ଥିଲା ।" ମାଉଳାଳୟରେ ଅବସ୍ଥାନ କରୁଥିବା ସମୟରେ ସେଠାରେ ଜନୈକ ସଂସ୍କୃତ ପଣ୍ଡିତ ଚକ୍ରଧର ନାୟକଙ୍କ ସହିତ ପରିଚୟ ହୋଇଥିଲା ଓ ତାଙ୍କ ସାହଚର୍ଯ୍ୟରେ ସେ ବହୁ ସଂସ୍କୃତ କାବ୍ୟକବିତା ପାଠ କରିବାର ସୁବିଧାଲାଭ କରିଥିଲେ ।

ସୌର୍ଯ୍ୟଶକ୍ତି ବଳରେ ଅଭିମନ୍ୟୁ କବିତ୍ୱଲାଭ କରିବା ବିଷୟ ଅନେକ ଆଲୋଚକ କହିଯାଇ ଅଛନ୍ତି । 'ବାଘ ଗୀତ' 'ହୁଁ ଗୀତ' ଓ 'ଫୁଲ ବଉଳବେଣୀ' ପ୍ରଭୃତି ସୁନ୍ଦର ଲୋକଗୀତ ରଚନା କରିବାର ଶକ୍ତି ଅଭିମନ୍ୟୁଙ୍କର ବାଲ୍ୟକାଳରୁ ହିଁ ପ୍ରକାଶ ଲାଭ କରିଥିଲା । ମୃତ୍ୟୁଞ୍ଜୟ ରଥ 'ବିଦଗ୍ଧ ଚିନ୍ତାମଣି'ର ଆଲୋଚନା ପ୍ରସଙ୍ଗରେ ଲେଖିଅଛନ୍ତି ଯେ, ଜନୈକ ସାଧୁଙ୍କ ମନ୍ତ୍ରୋପଦେଶ ବଳରେ ତାଙ୍କର କବିତ୍ୱ ସ୍ଫୁର୍ତ୍ତି ଘଟିଥିଲା ।

ଅଭିମନ୍ୟୁଙ୍କ ଜୀବନୀ ସମ୍ବନ୍ଧରେ ଆହୁରି ଜଣାଯାଏ ଯେ, ସେ ୧୪ ବର୍ଷ ବୟସରେ କେନ୍ଦ୍ରାପଡ଼ାର ସ୍ୱର୍ଗତ ଜମିଦାର ରାଧାଶ୍ୟାମ ନରେନ୍ଦ୍ରଦେବଙ୍କ ପିତୃସ୍ୱସା ସଦାଶିବ ଜେନାଙ୍କ ଭଉଣୀ ବିମଳା ଦେବୀଙ୍କୁ ବିବାହ କରିଥିଲେ । ୧୯ ବର୍ଷ

ବୟସରେ ତାଙ୍କର ପିତାଙ୍କର ମୃତ୍ୟୁ ଘଟନ୍ତେ ସେ ସାଂସାରିକ ବିଷୟ ଜଞ୍ଜାଳ ପ୍ରତି ବିମୁଖ ହୋଇ ତାଙ୍କର ଆରାଧ୍ୟ ଦେବତା ଗୋପୀମୋହନଙ୍କ ଉପାସନାରେ ସମସ୍ତ ନିଜକୁ ବିନିଯୋଗ କଲେ । ବିଭିନ୍ନ କାବ୍ୟ ସୂଚନାର ସାହାଯ୍ୟ ନିର୍ଦ୍ଦେଶ କରି ସ୍ୱର୍ଗୀୟ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ପ୍ରକାଶ କରିଅଛନ୍ତି ଯେ କବି "ପ୍ରେମଚିନ୍ତାମଣି କାବ୍ୟକୁ ୨୯ ବର୍ଷ ବୟସରେ ଆରମ୍ଭ କରି ଶେଷ କରିଥିବା ଉକ୍ତ କାବ୍ୟରେ ଉଲ୍ଲେଖ କରିଅଛନ୍ତି । ୨୦ ବର୍ଷ ବୟସରେ 'ପ୍ରେମକଳା' ରଚନା ଆରମ୍ଭ କରିଥିଲେ । 'ରସବତୀ' ୨୪ ବର୍ଷ ବୟସରେ ଶେଷ କରିଥିଲେ ଓ 'ସୁଲକ୍ଷଣା' ୨୬ ବର୍ଷ ବୟସରେ ଶେଷ କରିଥିବା କାଳଗଣନାରୁ ଜଣାଯାଏ ।"

ଭକ୍ତପ୍ରାଣ କବି ଅଭିମନ୍ୟୁ ଭାରତରେ ବିଭିନ୍ନ ତୀର୍ଥ ପର୍ଯ୍ୟଟନ କରିଥିଲେ ଓ ଜୀବନର ଶେଷଭାଗରେ ସେ ବୃନ୍ଦାବନ ଯାତ୍ରା କରିଥିବାର ଜଣାଯାଏ । ଜୀବନର ଶେଷଭାଗରେ ସେ ପୁନର୍ବାର ବୃନ୍ଦାବନ ଯାତ୍ରା କରିବାକୁ ବାହାରନ୍ତେ ଗ୍ରାମର ଅଳ୍ପ ଦୂରରେ ଥିବା ହରିପୁରଠାରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କ ସ୍ୱର୍ଗାରୋହଣ ସମୟ ହେଉଛି ଖ୍ରୀ: ୧୮୧୦ ।

## କାବ୍ୟ ପରିଚିତି

(୧) **ରସବତୀ**—ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର ପଦାଙ୍କ ଅନୁସରଣ କରି ଅଭିମନ୍ୟୁ ରସବତୀ ନାମକ କାଳ୍ପନିକ କାବ୍ୟ ରଚନା କରିଥିବାର ଜଣାଯାଏ । କାବ୍ୟର ଛାନ୍ଦସଂଖ୍ୟା ୩୨ । ଅଙ୍ଗଦେଶର ରାଜା କୀର୍ତ୍ତିଚନ୍ଦ୍ର ଓ କୀର୍ତ୍ତିଚନ୍ଦ୍ରଙ୍କ ସ୍ତ୍ରୀ ଦ୍ୱିତୀରମା (ଦ୍ୱିତୀୟ ରମା) । ଦ୍ୱିତୀରମାଙ୍କର ଗର୍ଭରୁ ରସବତୀ ନାମକ ଏକ ସୁନ୍ଦରୀ କନ୍ୟା ଜନ୍ମଗ୍ରହଣ କଲେ । ଏହି କାବ୍ୟରେ କବି ରସବତୀର ସ୍ୱୟମ୍ବର ବର୍ଣ୍ଣନା କରିଅଛନ୍ତି । କବି ଏହି ଗ୍ରନ୍ଥରେ ନିଜର ପରିଚୟ ଏହିପରି ଭାବରେ ପ୍ରଦାନ କରିଅଛନ୍ତି :—

"ଜମ୍ବୁଦ୍ୱୀପ ଭରତ ଖଣ୍ଡରେ । ଉତ୍କଳ ଦେଶର ମଧ୍ୟରେ ।
ଶ୍ରୀ ଯାଜନଗର ସନ୍ନିକଟେ । ଏହାର ବ୍ରାହ୍ମଣୀନଦୀ ତଟେ ।
କ୍ଷତ୍ରିୟ ବଂଶ କୀର୍ତ୍ତିକର । ଛନ୍ଦ୍ରଜିତ ସାମନ୍ତ ବର ।
ମୁଁ ଜ୍ୟେଷ୍ଠ କୁମର ତାଙ୍କର । ପ୍ରତିଷ୍ଠା ସାମନ୍ତସିଂହାର ।
ମୋ ନାମ ଦୀନ ଅଭିମନ୍ୟୁ । ମୋ ପ୍ରାଣପତି ନନ୍ଦସୁନୁ ।
ଶ୍ରୀ ବୀର କେଶରୀ ନୃପତି । ନବଷଷ୍ଠୀ ଅଙ୍କେ ସମାପ୍ତି ।

ଏଥିରୁ ସ୍ପଷ୍ଟ ଭାବରେ ପ୍ରତିପାଦିତ ହୋଇଥାଏ ଯେ, କବି ଖ୍ରୀ: ୧୭୯୨ରେ ରସବତୀ ଗ୍ରନ୍ଥ ରଚନା ଶେଷ କରିଥିଲେ ଓ ସେତେବେଳେ ତାଙ୍କୁ ୩୫ ବର୍ଷ ହୋଇଥିଲା ।

**ସୁଲକ୍ଷଣା**—ଏହି ଗ୍ରନ୍ଥଟି କବିଙ୍କର ଏକ କ୍ଷୁଦ୍ର କାବ୍ୟ ଓ କାବ୍ୟରେ ଛାନ୍ଦସଂଖ୍ୟା ୧୭ । ବହୁଦିନ ତଳେ ଏହି କାବ୍ୟଟି ମୁକୁର ପ୍ରେସରୁ ପ୍ରକାଶଲାଭ କରିଥିଲା । ଉପେନ୍ଦ୍ର ଭଞ୍ଜଙ୍କର 'ସୁଭଦ୍ରା ପରିଣୟ' ଅନୁକରଣରେ 'ସ' ବର୍ଣ୍ଣ ନିୟମରେ 'ସୁଲକ୍ଷଣା' ନାମକ କାବ୍ୟ ରଚନା କରିଥିଲେ । କବି ସୁଲକ୍ଷଣାର ବିଷୟବସ୍ତୁ ସାରଳା ମହାଭାରତରୁ ଗ୍ରହଣ କରିଛନ୍ତି । ସାରଳା ମହାଭାରତ ମଧ୍ୟ-ପର୍ବରେ ଚନ୍ଦ୍ରାବତୀ-ହରଣ ବିଷୟ ବର୍ଣ୍ଣନା କରାଯାଇଛି । ଦୁର୍ଯ୍ୟୋଧନ ନିଜର କନ୍ୟା ସୁଲକ୍ଷଣାର ସ୍ୱୟମ୍ବର ଠିକ୍ କରନ୍ତେ ନାରଦଙ୍କର କୂଟନୀତି ଯୋଗୁଁ ତାହା ଆଉ ସମ୍ଭବ ହୋଇପାରି ନ ଥିଲା । ସୁଲକ୍ଷଣା ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବଙ୍କ ସହିତ ଗୁପ୍ତପ୍ରଣୟ ସୂତ୍ରରେ ଆବଦ୍ଧ ହେଲେ । ଦୁର୍ଯ୍ୟୋଧନ ଏହି ବିଷୟ ଜାଣିପାରି ଶାମ୍ବଙ୍କୁ ବିନାଶ କରିବା ନିମିତ୍ତ ଚେଷ୍ଟା କରନ୍ତେ, ନାରଦ ଜାଣିପାରି ଶ୍ରୀକୃଷ୍ଣଙ୍କୁ ଓ ବଳରାମଙ୍କୁ ତାହା ଜଣାଇଲେ । ଶ୍ରୀକୃଷ୍ଣ ଓ ବଳରାମ ସୈନ୍ୟସାମନ୍ତ ଆଣି ହସ୍ତିନା ଆକ୍ରମଣ କଲେ । ପରେ ଦୁର୍ଯ୍ୟୋଧନ ଯୁଦ୍ଧରେ ହାରିଗଲେ । ଶାମ୍ବ ଓ ସୁଲକ୍ଷଣାଙ୍କର ପରିଣୟ ହେଲା ଉଷାଭିଳାଷ, ସୁଭଦ୍ରାପରିଣୟ ପ୍ରଭୃତି ପୂର୍ବବର୍ତ୍ତୀ କାବ୍ୟଦ୍ୱାରା ଅନୁପ୍ରାଣିତ ସୁଲକ୍ଷଣା ରଚନାରେ ସବିଶେଷ ପ୍ରଭାବିତ ହୋଇଥିବା ଜଣାଯାଏ । ଲାବଣ୍ୟବତୀର ସ୍ୱପ୍ନଦର୍ଶନ ଛାନ୍ଦ କିପରି କବିଙ୍କୁ ପ୍ରଭାବିତ କରିଛି, ତାହା ନିମ୍ନୋକ୍ତ ଉଦାହରଣରୁ ଜଣାଯାଏ ।

ଲାବଣ୍ୟବତୀ :—

> ଚେତ ଘୃରୁଣି ଘୃହିଲା ଜଣିନାଶେ ପାଶେ ନାହିଁ ଦିବ୍ୟ ତରୁଣ
> ମାରି ହୃଦେ ହାତ ନାଥ ନାଥ ବୋଲି ଅତି ଉଚେ କଲା କାରୁଣ୍ୟ
> ଖୋଜେ ଅର୍ଦ୍ଧାରେ, ଚେତନାହିଁ ସେ ଛାଧରେ
> ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ—

ସୁଲକ୍ଷଣା :—

> ସେକ୍ଷଣେ ତକ୍ଷଣେ ସୁଲକ୍ଷଣା    କ୍ଷଣକାନ୍ତ ପରାୟେ ଚମକିଲା
> ସୁର ମୋହିନୀ ନିଦ୍ରା ଭାଙ୍ଗିଗଲା
> ସତ ମଣି ପୁଣି ସେ ରମଣିମଣି ଭ୍ରମେ ଶୟନେ ଲେଉଡ଼ିଲା, ହେ ସୁଜନେ ।
> ଶ୍ରୀହସ୍ତକୁ ଉରଜ ମଧ୍ୟେ ଭରି    ସଙ୍ଗୁଳିଇ ସେ ପୁରୁଷକୁ ଚୋରି
> ଶେଯ ଲେଉଟାଇ କବରୀ ଫିଟାଇ    ଖୋଜଇ ଚିତ୍ତ ଆତୁରୀ
> ହେ ସୁଜନେ । (ଦ୍ୱିତୀୟ ଛାନ୍ଦ)

କାବ୍ୟରେ ୧୭ଟି ମାତ୍ର ଛାନ୍ଦ ରହିଛି । କବି ସୁଲକ୍ଷଣା ବିଷୟରେ କହିବାକୁ ଯାଇ ଲେଖିଅଛନ୍ତି, ଏହି କାବ୍ୟ 'ସୂର୍ଯ୍ୟ ପ୍ରାୟ ଅକଳଙ୍କ ଲକ୍ଷଣେ ମଣ୍ଡୁଳା ।'

ସୁଲକ୍ଷଣା କାବ୍ୟ ସମ୍ବନ୍ଧରେ ଅନ୍ୟାନ୍ୟ ପରିଚୟାତ୍ମକ ବିବରଣୀ କବି ଦେବାକୁ ଯାଇ ଲେଖିଅଛନ୍ତି—

"ସୁଲକ୍ଷଣା ନାମରେ ଏ କବିତ୍ୱ ହୋଇବ
ସରସେ ଲକ୍ଷଣାଲଙ୍କାରରେ ବିରାଜିବ ହେ ।
ସମସ୍ତ ରଙ୍ଗରେ ରାମାପ୍ରାପ୍ତ ସୁଖ ହେବ
'ସ' ଆଦ୍ୟ ନିୟମ ଅବିଘ୍ନରେ ସିଦ୍ଧ ହେବ ।
ଷୋଳ ପଦ ଷୋଳ ଛାନ୍ଦ ଏଥି ରାଗ ଷୋଳ
ସୂର୍ଯ୍ୟ ପ୍ରାପ୍ତ ନିକଳଙ୍କ ଲକ୍ଷଣେ ମଞ୍ଜୁଳ ।"

(ପ୍ରଥମ ଛାନ୍ଦ)

କବି ଖ୍ରୀ: ୧୭୭୩ରେ ସୁଲକ୍ଷଣା ରଚନା କରିଥିବାର ଜଣାଯାଇଥାଏ ।

## ପ୍ରେମଚିନ୍ତାମଣି :—

ପ୍ରେମଚିନ୍ତାମଣି କବି ଅଭିମନ୍ୟୁଙ୍କର ଏକ କ୍ଷୁଦ୍ର ରଚନା ଓ ତହିଁରେ ଗୌଡ଼ୀୟବୈଷ୍ଣବଧର୍ମ ସମ୍ବନ୍ଧୀୟ ବିଭିନ୍ନ ତତ୍ତ୍ୱ ଆଲୋଚିତ ହୋଇଛି । ଅଭିମନ୍ୟୁ ପ୍ରେମଚିନ୍ତାମଣି କାବ୍ୟ 'ଶ୍ରୀକିଶୋରଦେବଙ୍କ ପଞ୍ଚଷଠୀ ଅଙ୍କ' ବା ଖ୍ରୀ: ୧୭୮୯ରେ ଲେଖିଥିବାର ଜଣାଯାଏ ।

## ପ୍ରେମକଳା :—

ପ୍ରେମକଳା କାବ୍ୟ ସମ୍ବନ୍ଧରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଲେଖିଛନ୍ତି ଯେ, 'ପ୍ରେମକଳା କାବ୍ୟଟିର ସମୟ ମଧ୍ୟ ଜଣାଯାଇ ନାହିଁ ।' (୧) କିନ୍ତୁ ବହୁ ପୂର୍ବରୁ ମନମୋହନ ଚକ୍ରବର୍ତ୍ତୀ ତାଙ୍କର (Language and liter ture of Oriss ı, J. A. S. B. Vol LXVII, P. I. No 4. 18୯୮) ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧୀୟ ସନ୍ଦର୍ଭରେ ପ୍ରେମକଳା ସମ୍ବନ୍ଧରେ ଲେଖିଛନ୍ତି—

"ବିଂଶବରଷ ବୟସେ ଏହା ଆରମ୍ଭିଲି
• ସୁଜନ ପଦାଶ୍ରିତରେ ଶଙ୍କାହୀନ କଲି । ୧୧୧ ।

(ପ୍ରେ: କ: ୧ମ ଛାନ୍ଦ)

ଏଥିରୁ ଜଣାଯାଏ ଯେ, ଖ୍ରୀ: ୧୭୭୭ରେ ସେ ପ୍ରେମକଳା ରଚନା କରିଥିଲେ । କବି ଏହି କାବ୍ୟରେ ନିଜର ବଂଶ ଓ ପରିବାରର ସମ୍ୟକ ପରିଚୟ ଏହିପରି ଭାବରେ ପ୍ରଦାନ କରିଛନ୍ତି, ଯାହା ଅଭିମନ୍ୟୁଙ୍କର ଜୀବନୀ ସମ୍ବନ୍ଧୀୟ ଇତିହାସ ଦୃଷ୍ଟିରୁ ବିଶେଷ ମୂଲ୍ୟବାନ ବୋଲି ଜଣାପଡ଼େ ।

---

୧ । ପୁଷ୍ପଗିରି—ଅଭିମନ୍ୟୁ ଚିଶେଷାଙ୍କ ପୃ. ୭

"ଜମ୍ବୁ ଦ୍ୱୀପ ଭରତ ଖଣ୍ଡ ଏ ସାର ମଧ୍ୟ
ମହୋଦଧି ଯାଜନଗ ମଧ୍ୟ ରମ୍ୟ ଇହିଁ ।
ସୁବହ୍ନାର ସ୍ଥାନ ଏଣୁ ଥିବାର ସେ ଦେଶ
ଗୋଲକୁଣ୍ଡ ନାମେ ଗ୍ରାମ ତହିଁରେ ପ୍ରକାଶ ଯେ ।
ବ୍ରାହ୍ମୀ ନଦୀ ସେ ଗ୍ରାମ ସୀମା ଭେଦ ବହି
ବିଶିଷ୍ଟ ଗୋଧନ ରହିବାର ସ୍ଥାନ ସେହି ।
ଏ ରାଜ୍ୟର ରାଜା ମିତ୍ରବଂଶୀ କ୍ଷତ୍ରୀବର
ଇନ୍ଦ୍ରଜିତ ସାମନ୍ତସିଂହାର ନାମ ବର ।
ତାଙ୍କ ଜ୍ୟେଷ୍ଠ ସୁତ ଅଭିମନ୍ୟୁ ନାମ ମୋର
ଆଡ଼ମ୍ବର ରୀତରେ ତ ସାମନ୍ତସିଂହାର ।
(ପ୍ରେ: କ: ୧ମ ଛାନ୍ଦ)

ପ୍ରେମକଳାର ଛାନ୍ଦସଂଖ୍ୟା ୭୪ ଓ ତାହା ଏକ କାଳ୍ପନିକ କାବ୍ୟ, ଯାହା ଭଞ୍ଜୀୟ ରୀତରେ ଲେଖାଯାଇଛି ।

ଅନ୍ୟାନ୍ୟ କ୍ଷୁଦ୍ର ରଚନା ମଧ୍ୟରେ 'ବାଘ ଗୀତ', 'ଜେମା ଗୀତ', 'ହୁଁ ଗୀତ', 'ଗୋବରା ଚଢ଼େଇ' ଓ 'ଫୁଲବଉଲବେଣୀ' ଗୀତ ପ୍ରଧାନ ଅଟେ । କବିଙ୍କର 'ବାଘ ଗୀତ'ଟି ପ୍ରକାଶ ଲାଭ କରିଛି । ଏହିସବୁ ରଚନା ମଧ୍ୟରେ କବିଙ୍କର ରଚନାଭଙ୍ଗୀ ପ୍ରକାଶ ପାଇଛି । କଥିତ ଅଛି ଯେ କବିଙ୍କୁ ନଅ ବର୍ଷ ବେଳେ ସେ ଏହି କବିତାଗୁଡ଼ିକ ରଚନା କରିଥିଲେ ।

'ବାଘ ଗୀତ'ରେ ପିତା ଇନ୍ଦ୍ରଜିତ ସାମନ୍ତସିଂହାର ତାଙ୍କର ପୁତ୍ର ଅଭିମନ୍ୟୁ, ବୈକୁଣ୍ଠ, ମୁଗଲ ଓ ସେନାପତି ଗଡ଼ନାୟକଙ୍କ ସହିତ ବାଲିଆ ନାକଟଷ୍ଟ ବଣରୁ କପର ବାଘ ଶିକାର କରିଥିଲେ, ତାହାର ବର୍ଣ୍ଣନା ଏହି କ୍ଷୁଦ୍ର ଗୀତିକାରେ ଦିଆଯାଇଛି । ବାଘକୁ ଘେରାଉ କରିବା ପରେ ତାହା କପର ରାଜାଙ୍କ ପୁତ୍ର ବୈକୁଣ୍ଠଙ୍କ ଦ୍ୱାରା ଗୁଳିରେ ହତ ହୋଇଥିଲା, ତାହା ଗୀତିକାର ପ୍ରତିପାଦ୍ୟ ବିଷୟ । ବାଘ ଗୀତରେ କେତେକ ସୁନ୍ଦର ବାସ୍ତବ ବର୍ଣ୍ଣନ ହେଲା—

"ରଖାଇଲେ ସୈନ୍ୟସ୍ଥାନ ଜଗାଇ । କାହାରି ଆଡ଼େ ନ ଯିବ ଟି ଘାଇ ।
ଆର ପାଖରେ ନାଗରା ବାଜଇ । ବୁଦାରୁ ଜନ୍ତୁ ଯହୁଁ ଗଲେ ଡେଇଁ ।
ଗୁଳି ବାଜେ ତାଇ, ବନରୁ ଯେହ୍ନ ପଦାକୁ ଗଡ଼ଇ । ୧୦ ।

× × × ×

ଗରଜନ ଘନ ଲେକପହଲ । ଚକିତ ବହିସିବାର ତ ଜଲ ।
ଭେକ ଫର ରଡ଼ି ଛାଡ଼େ ଚଳିଲ । ବନ୍ଦୁକ ଶବଦ ପକ୍ଷୀ ଗହଲ ।
ପୃଥ୍ୱୀ ଟଳମଳ । ଧୂମମଧ୍ୟରେ ଲୁଚିଲେ ଅଚଳ । ୧୨ ।

ଘନ ପରି ପ୍ରଚଣ୍ଡ ଶିଙ୍କାର ରଣ । ଚକମକ ଜକ ବଳୁଲି ବାଣ ।
ଇନ୍ଦ୍ରଧନୁ ପରି ବରଷେ ବାଣ । କରକା ଶବଦ ଟଙ୍କାର ଗୁଣ
ନଳୀ ଗୁଳ ପୂର୍ଣ୍ଣ, ଚଢ଼କ ପ୍ରାସ୍ୟେ ଘେନଇ ପଗ୍ରଣ । ୧୩ ।

ପ୍ରାଚୀନ ଓଡ଼ିଆ କବିମାନଙ୍କ ପରି ଅଭିମନ୍ୟୁ ମଧ୍ୟ କେତେକ ଚଉତିଶା ରଚନା କରିଥିବାର ଜଣାଯାଏ । ତନ୍ମଧ୍ୟରେ 'ଭଜନ ଚଉତିଶା' ଓ 'କୋକିଳ ଚଉତିଶା' ଦୁଇଟି ପ୍ରଧାନ ଚଉତିଶା । ଭଜନ ଚଉତିଶାଟି ଏ ପର୍ଯ୍ୟନ୍ତ ପ୍ରକାଶଲାଭ କରିନାହିଁ । ତନ୍ମଧ୍ୟରୁ କେତୋଟି ପଦ ହେଲା—

"କେଉଁ ଦୀନହୀନ କରୁଛୁ ଜଣାଣ କରୁଣା ନିଧାନ ସନ୍ନିଧାନ
ଖେଦ ଜଳଧିରେ ଭାସି ଯାଉଅଛୁ ରଖ ରଖ ହୋଇ ସାବଧାନ ।

× × × ×

ଶମନପୁରୁ ଗୁରୁପୁତ୍ର ଆଣିଲେ ଦ୍ୱନ୍ଦ୍ୱରେ ଅନ୍ଧକୁ ଚକ୍ଷୁ ଦେଲ
ସେ ମହିମାମାନ ଏବେ କେଣେଗଲା ଶ୍ରୀଭୁଜ ଚନ୍ଦ୍ର କି ହଜାଇଲ ।
ଆହେ ହୃଷୀକେଶ, କ୍ଷମାକର ଦୀନଜନ ଦୋଷ ।
ଅଭୟ ଚରଣେ ଶରଣ ପଶୁଛୁ ପୁରୁ ଦୀନ ଅଭିମନ୍ୟୁ ଆଶ । ୩୪ ।"

## ବିଦଗ୍ଧ ଚିନ୍ତାମଣି

ବିଦଗ୍ଧ ଚିନ୍ତାମଣି କାବ୍ୟ ରସିକକବି ଅଭିମନ୍ୟୁଙ୍କର ଅମର କୃତି । କେହି କେହି ଏହି କାବ୍ୟକୁ ଭଞ୍ଜଯୁଗର ଶ୍ରେଷ୍ଠ କାବ୍ୟ ବୋଲି ମଧ୍ୟ ଅଭିହିତ କରିଥାନ୍ତି । ଭଞ୍ଜଯୁଗ ରୀତିଯୁଗ ନାମରେ ଆଖ୍ୟାତ ଏବଂ ବିଦଗ୍ଧ ଚିନ୍ତାମଣି ରୀତିକାବ୍ୟ ମଧ୍ୟରେ ଯେ ଏକ ଶ୍ରେଷ୍ଠସ୍ଥାନ ଅଧିକାର କରିବ, କହିବା ବାହୁଲ୍ୟ ହେବ । ବିଦଗ୍ଧ ଚିନ୍ତାମଣି ଉଭୟ ସାଧାରଣ ପାଠକ ଓ ଓଡ଼ିଶାର ଗୌଡ଼ୀୟ ବୈଷ୍ଣବଧର୍ମୀ ଭକ୍ତମାନଙ୍କ ମଧ୍ୟରେ ଆବହମାନ କାଳରୁ ଲୋକପ୍ରିୟତା ଅର୍ଜ୍ଜନ କରିଆସିଛି । ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ ବିଦଗ୍ଧ ଚିନ୍ତାମଣିର ଆଲୋଚନା କରିବାକୁ ଯାଇ ବିଦଗ୍ଧ ଚିନ୍ତାମଣିର ଭୂୟସୀ ପ୍ରଶଂସା କରିଅଛନ୍ତି ଓ ସଂସ୍କୃତ ଶ୍ଳୋକ ଅନୁକରଣରେ ଲେଖିଛନ୍ତି ଯେ, ଉପେନ୍ଦ୍ରଭଞ୍ଜଙ୍କର ରଚନାରେ ଉପମା ଓ ଅର୍ଥ ଗୌରବ, ଦୀନକୃଷ୍ଣଙ୍କର ରସକଲ୍ଲୋଳରେ ପଦଲାଳିତ୍ୟ ଦେଖାଯାଇ ଥାଏ, କିନ୍ତୁ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣିରେ ପୂର୍ବୋକ୍ତ ସମସ୍ତ ଗୁଣ ଯଥା—ଉପମା, ଅର୍ଥ ଗୌରବ ଓ ପଦଲାଳିତ୍ୟ ପରିଦୃଷ୍ଟ ହୋଇଥାଏ । ଯଥା—

"ଉପମା ଭଞ୍ଜ କାରସ୍ୟ ତସ୍ୟୈବଚାର୍ଥ ଗୌରବମ୍
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚିନ୍ତାମଣୌତ୍ରୟଃ ।"

ଗୌଡ଼ୀୟ ବୈଷ୍ଣବଧର୍ମତତ୍ତ୍ୱ ନିହିତ ବହୁ କାବ୍ୟକବିତା ବହୁ ପୂର୍ବରୁ ଓଡ଼ିଆ ସାହିତ୍ୟରେ ରଚିତ ହୋଇଥିଲେ ମଧ୍ୟ ବିଦଗ୍ଧ ଚିନ୍ତାମଣି ପରି ରସମୟ ଆଲଂକାରିକ ବିରାଟ କାବ୍ୟ ଅଭିମନ୍ୟୁଙ୍କ ପୂର୍ବରୁ ଅନ୍ୟ କୌଣସି ଓଡ଼ିଆ କବି ରଚନା କରିନାହାନ୍ତି ଓ ବୈଷ୍ଣବ ସାହିତ୍ୟ ସମୃଦ୍ଧ ବଙ୍ଗସାହିତ୍ୟରେ ମଧ୍ୟ ଏପରି ଖଣ୍ଡେ କାବ୍ୟ ଦେଖିବାକୁ ମିଳେ ନାହିଁ । ଓଡ଼ିଆ ରୀତିସାହିତ୍ୟରେ ତିନି ପ୍ରଧାନ କବି, ଯଥା—ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ମଧ୍ୟରେ ଅଭିମନ୍ୟୁଙ୍କର 'ବିଦଗ୍ଧ ଚିନ୍ତାମଣି'ରେ କାବ୍ୟ ଯୁଗର ଶେଷ ଝଲକ ଝଲସିତ ହୋଇ ଉଠିଲା ପରି ମନେ ହୋଇଥାଏ ଓ କାବ୍ୟଯୁଗ ସାହିତ୍ୟର ପରିପକ୍ୱତା ବିଦଗ୍ଧ ଚିନ୍ତାମଣି କାବ୍ୟର ବିଭିନ୍ନ ଛାନ୍ଦରେ ଯେ ପ୍ରକଟିତ ହୋଇଛି, କହିବା ଭୁଲ ହେବ ନାହିଁ । କବି ନିଜେ ବିଦଗ୍ଧ ଚିନ୍ତାମଣି କାବ୍ୟର ଭୂୟସୀ ପ୍ରଶଂସା ମଧ୍ୟ କରିଅଛନ୍ତି । ଯଥା :—

ବୈଦଗ୍ଧ ଚିନ୍ତାମଣି ଏ ଛାନ୍ଦ ସ୍ୱର୍ଗ
ଏଥି ବିହର ଧୀର ଅମର ବର୍ଗ । ଛା—୧।୨୯
ବିଦଗ୍ଧ ଏ ବିଦଗ୍ଧ ଚିନ୍ତାମଣି ପ୍ରବନ୍ଧ
ବୁଧଙ୍କ ମନକୁ ବୋଧକ ଅଙ୍କ ଏଥିକ ଅନ୍ଧ ।
ଛା: ୧୦୩।୫୩

ପୁନଶ୍ଚ ପ୍ରଥମ ଛାନ୍ଦରେ କବି ସ୍ୱୀୟ କାବ୍ୟର ଗୁଣାଗୁଣ ଯେପରି ସୁନ୍ଦର ଭାବରେ ବ୍ୟାଖ୍ୟାନ କରିଅଛନ୍ତି, ତାହା ଅନ୍ୟ କୌଣସି ଓଡ଼ିଆ କାବ୍ୟରେ ଦେଖାଯାଇ ନ ଥାଏ । ବିଦଗ୍ଧ ଚିନ୍ତାମଣି ଭକ୍ତକବି ଅଭିମନ୍ୟୁଙ୍କ ଲେଖନୀର ଯେ ଅନବଦ୍ୟ ନିର୍ଯ୍ୟାସ, ତାହା ପ୍ରଥମ ଛାନ୍ଦର ବିଭିନ୍ନ ପଦାବଳୀରେ ପ୍ରକଟିତ ହୋଇଛି, ଯେମନ୍ତ—

ଗୁଣ ଗ୍ରାହକେ ପାଇବେ ଚିନ୍ତାଳ ସୁପ୍ରେମ
ଗୀତ ହେବ ବିଦଗ୍ଧ ଚିନ୍ତାମଣି ନାମ ।
ଗୁଣାରେ ପୋଛିଲେ ନରେ ପାଇଲେ ନିର୍ବାଣ
ଗୁଣବନ୍ତ ରସିକ ହୃଦକୁ ରତି ଜାଣ । ୧।୬୦

× × ×

ଚନ୍ଦ୍ରରୁ ଶୀତଳ ସ୍ୱାଦୁ ସୁଧାରୁ ବିମଳ
ଚରିତ ଗଙ୍ଗା ନିର୍ମଳ ସିନ୍ଧୁରୁ ଅଟଳ ।
ଛନ୍ଦାର୍ଥିକ ଦମ୍ଭଧର ଚରଣକୁ ପବି
ଛଇଲ ଲୋକର ନବ ପୁଣ୍ୟବନ୍ତି ଛବି । ୧।୬୩

## କାବ୍ୟର ନାମକରଣ—

ଅନେକ ସମାଲୋଚକ କହନ୍ତି ଯେ, କବି ବିଦଗ୍ଧ ଚିନ୍ତାମଣି କାବ୍ୟର ନାମକରଣ ବୈଷ୍ଣବକବି ରୂପଗୋସ୍ୱାମୀଙ୍କର ପ୍ରସିଦ୍ଧ 'ବିଦଗ୍ଧ ମାଧବ' ନାଟକ ଅନୁସରଣରେ କରିଅଛନ୍ତି । ଗୌଡ଼ୀୟ ବୈଷ୍ଣବ ପଦାବଳୀ ସାହିତ୍ୟର ମଧ୍ୟ କଳାନିପୁଣ ଶ୍ରୀକୃଷ୍ଣଙ୍କର ଅର୍ଥରେ 'ବିଦଗ୍ଧ' ଶବ୍ଦର ବହୁଳ ବ୍ୟବହାର ଲକ୍ଷ୍ୟ କରାଯାଇଥାଏ । ତନ୍ମଧ୍ୟରୁ ଏଠାରେ କେତେକ ଦୃଷ୍ଟାନ୍ତ ଦେଲେ ଅବାନ୍ତର ହେବ ନାହିଁ ବୋଲି ମୋର ମନେହୁଏ ।

'କି ହେରଲୁ ଆଗେ ମଧ୍ୟ ବିଦଗ୍ଧରାଜ
ଭକତ କଲପତରୁ ନବଦ୍ୱୀପ ମାଝ ।' —ବାସୁଦେବ ଘୋଷ ।
'ବିଦଗ୍ଧ ରସିକ ଶିରୋମଣି ନାଗର
ଦରଶେ ବୁଝିବ ବ୍ୟବହାର' —ଯଦୁନନ୍ଦନ ଦାସ ।
'ବିଦଗ୍ଧ ନାଗର କାତର ଦେଖିୟା ଅତି
ଚମକିତ ଦୋଉକା ଚିତ' —ଯଦୁନନ୍ଦନ ଦାସ ।
'ବିଦଗ୍ଧ ଶ୍ୟାମରାୟ ବସନେ କରାୟ ବାୟୁ'
—ଗୋବିନ୍ଦ ଆଚାର୍ଯ୍ୟ ଇତ୍ୟାଦି ।

ଗୌଡ଼ୀୟ ବୈଷ୍ଣବ ପଦାବଳୀ ସାହିତ୍ୟର ଏହିପରି ଶତାଧିକ 'ବିଦଗ୍ଧ' ଶବ୍ଦ କଳାମଧ୍ୟ ଶ୍ରୀକୃଷ୍ଣଙ୍କ ଅର୍ଥରେ ଓ ତାଙ୍କର ମଧୁର ଲୀଳା ପ୍ରସଙ୍ଗ ବର୍ଣ୍ଣନାରେ ବ୍ୟବହୃତ ହୋଇଅଛି । ଭକ୍ତକବି ଗୌଡ଼ୀୟ ବୈଷ୍ଣବ ଥିବା ହେତୁ ସେ ଗୌଡ଼ୀୟ ପଦାବଳୀ ସାହିତ୍ୟ ତଥା ରୂପ, ଜୀବ, ସନାତନ ପ୍ରଭୃତି ଷଡ଼୍‌ଗୋସ୍ୱାମୀମାନଙ୍କର ସଂସ୍କୃତ, ନାଟକ ଅଳଙ୍କାର ଓ ଭକ୍ତିଗ୍ରନ୍ଥ ପାଠ କରିଥିଲେ । ବିଦଗ୍ଧ ଚିନ୍ତାମଣି ପାଠ କରିବା ସମୟରେ ଏ ସମସ୍ତର ସ୍ପଷ୍ଟ ଅଭାବ ଆମ୍ଭେମାନେ ଲକ୍ଷ୍ୟ କରିଥାଉଁ ।

କବି ବିଦଗ୍ଧ ଚିନ୍ତାମଣିର ରଚନାର ପୂର୍ବରୁ 'ପ୍ରେମ ଚିନ୍ତାମଣି' ନାମକ ଅନ୍ୟ ଏକ କାବ୍ୟ ରଚନା କରିଥିଲେ । କବିଙ୍କ ବିଦଗ୍ଧ ଚିନ୍ତାମଣି ଆଗରୁ ତାଙ୍କର ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ମଧ୍ୟ 'ଚୌରଚିନ୍ତାମଣି', 'ନାମଚିନ୍ତାମଣି' ଓ 'ପ୍ରେମ ଚିନ୍ତାମଣି' ପ୍ରଭୃତି ଚିନ୍ତାମଣି ନାମସମନ୍ୱିତ କାବ୍ୟ ରଚନା କରିଥିଲେ ।

ତେଣୁ ଏହିସବୁ ବିଶ୍ଳେଷଣରୁ ଜଣାଯାଏ ଯେ, କବିଙ୍କର 'ବିଦଗ୍ଧ ଚିନ୍ତାମଣି' ନାମକରଣ ଏକ ନୂତନ ପରିକଳ୍ପନା ବା ନୂତନ ସୃଷ୍ଟି ନୁହେଁ । * 'ବିଦଗ୍ଧ ଚିନ୍ତାମଣି' ନାମକରଣ ପଛରେ ଉଭୟ ଓଡ଼ିଆ ଓ ବଙ୍ଗୀୟ ବୈଷ୍ଣବ କବିମାନଙ୍କ

* ଶ୍ରୀ ଚୈତନ୍ୟ ଚରିତାମୃତରେ 'ବିଦଗ୍ଧ' 'ଅବିଦଗ୍ଧବିଧି' (୨।୧୫୯) 'ଚିନ୍ତାମଣୀ' (୫।୬୦) ଚିନ୍ତାମଣୀନାମ୍ ଅଭିଷ୍ଟ ଫଳଦାନ ସମର୍ଥ ରତ୍ନାନାମ୍ ।

ସ୍ପଷ୍ଟ ପ୍ରଭାବ ରହିଛି । ବିଶେଷ ଭାବରେ କବିଙ୍କର ପରମଗୁରୁ ସାଧୁଚରଣ ଦାସ ବା ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ପୂର୍ବୋକ୍ତ କାବ୍ୟାବଳୀର ନାମକରଣ କବିଙ୍କର କାବ୍ୟ 'ବିଦଗ୍ଧ ଚିନ୍ତାମଣି' ନାମକରଣ ପ୍ରତି ବିଶେଷ ଉଦ୍ଦୀପନା ପ୍ରଦାନ କରିଛି ।

କବି ତାଙ୍କର ପ୍ରେମକଳା କାବ୍ୟର ୧ମ ଛାନ୍ଦରେ ମଧ୍ୟ ଲେଖିଛନ୍ତି ଯେ—

"ଶ୍ରୀମନ୍ ଶ୍ରୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
କୃପାକଲେ ପ୍ରାପତ କବିତ୍ୱ ମାର୍ଗ ସୀମା ।"

ତେଣୁ ବିଦଗ୍ଧ ଚିନ୍ତାମଣି କାବ୍ୟର ନାମକରଣରେ ସଦାନନ୍ଦଙ୍କର 'ଚୌରଚିନ୍ତାମଣି' 'ନାମଚିନ୍ତାମଣି' ଓ 'ପ୍ରେମଚିନ୍ତାମଣି' ପ୍ରଭୃତି ରଚନାର ପ୍ରଭାବ ସୁସ୍ପଷ୍ଟ ଅଟେ ।

କବିଙ୍କର ସଂସ୍କୃତ ଭାଷା ଓ ସାହିତ୍ୟର ସବିଶେଷ ଦକ୍ଷତା ଥିବା ବିଷୟ ଆମ୍ଭେମାନେ ବିଦଗ୍ଧ ଚିନ୍ତାମଣି କାବ୍ୟର ପାଠରୁ ଲକ୍ଷ୍ୟ କରିଥାଉଁ । ଗୋସ୍ୱାମୀ-ମାନଙ୍କର ଗ୍ରନ୍ଥ କବି ଉତ୍ତମରୂପେ ପାଠ କରିଥିଲେ । ବୈଷ୍ଣବକବି ରୂପ ଗୋସ୍ୱାମୀଙ୍କର ନାଟକ 'ବିଦଗ୍ଧ ମାଧବ' କବି ପାଠ କରି ତଦ୍ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ ଥିବାର ଜଣାଯାଇଥାଏ । ଏପରିକି ବହୁ ସ୍ଥଳରେ 'ବିଦଗ୍ଧ ମାଧବ'ର ବିଭିନ୍ନ ବର୍ଣ୍ଣନା କବିଲେଖନୀକୁ ପ୍ରଭାବିତ କରିଛି । ତନ୍ମଧ୍ୟରୁ ଏଠାରେ କେତେକ ଦୃଷ୍ଟାନ୍ତ ପ୍ରଦାନ କଲେ ଭୁଲ ହେବ ନାହିଁ; ଯେପରି—

"ସମାସ୍ମିନ୍ ସନ୍ଦର୍ଭେ ଯଦପି କବିତାମଣ୍ଡଲଲତା
ମୁଦଂ ଧାସ୍ୟନତ୍ୟସ୍ୟାଂ ତଦପି ହରିଗନ୍ଧାହୃଧଗଣାଃ ।
ଅପଃ ଶାଲଗ୍ରାମ ପ୍ଲବନଗରିମୋଦ୍‌ଗାର ସରସାଃ
ସୁଧୀ କୋବା କୌପୀଂପି ନମିତମୂର୍ଦ୍ଧା ନ ପିବତି ।"

(ବି. ମା.)

ଏହି ପଦର ସ୍ପଷ୍ଟ ପ୍ରଭାବ କିପରି କବିଙ୍କର ରଚନାରେ ପ୍ରତିଫଳିତ ହୋଇଛି, ତାହା ବିଦଗ୍ଧ ଚିନ୍ତାମଣିର ନିମ୍ନୋକ୍ତ ପଦରୁ ଜଣାଯାଇଥାଏ । ଯଥା :—

ତମପଣେ ବର୍ଣ୍ଣିବି ମୁଁ ଗୋବିନ୍ଦ ଚରିତ
ତଗ ତମାଲ ହେଲେ ହେଁ ସାକ୍ଷାତେ ଅମୃତ ।
ଅମ୍ବୁ ଯେ ହେଉ ସେ ହେଉ ଶାଳଗ୍ରାମେ ସ୍ନାନ
ଅଗ୍ରାହ୍ୟ କାହାର ପାଦୋଦକ ନାମେ ଜ୍ଞାନ ।

(ଛା. ୧-୩୦।୩୧)

ବିଦଗ୍ଧ ମାଧବର ବିଷୟବସ୍ତୁ ଅନୁସରଣରେ ମଧ୍ୟ ଦେଖାଯାଏ ଯେ, ଏଥିରେ ଯେପରି ରାଧାକୃଷ୍ଣଙ୍କ ମିଳନ-ବିଚ୍ଛେଦର ମଧୁର ମୂର୍ଚ୍ଛନାରେ ଝଂକୃତ ହୋଇ ଉଠିଛି, ବିଦଗ୍ଧ ଚିନ୍ତାମଣିରେ ତଦ୍ରୂପ ବର୍ଣ୍ଣନା ପ୍ରକଟିତ ।

ବିଦଗ୍ଧ ମାଧବର ରାଧାକୃଷ୍ଣ ଚରିତକୁ ବାଦ୍ ଦେଲେ ବିଭିନ୍ନ ଉପଚରିତ ମଧ୍ୟରେ ପରିଲକ୍ଷିତ ମଧୁମଙ୍ଗଳ, ଲଳିତା, ବିଶାଖା, ପୌର୍ଣ୍ଣମାସୀ, ଜଟିଳା, ବୃନ୍ଦା, ଚନ୍ଦ୍ରାବଳୀ ବିଦଗ୍ଧ ଚିନ୍ତାମଣିରେ ମଧ୍ୟ ଦେଖାଯାଇଥାଏ । ତେଣୁ କହିବା ବାହୁଲ୍ୟ ହେବ ନାହିଁ ଯେ, କବିଙ୍କର ବିଦଗ୍ଧ ଚିନ୍ତାମଣି ବିଭିନ୍ନ ବିଷୟରେ ତଥା ନାମକରଣ ପ୍ରସଙ୍ଗରେ ବିଦଗ୍ଧମାଧବ ଦ୍ୱାରା ପ୍ରଭାବିତ ହୋଇଅଛି ।

'ବିଦଗ୍ଧ' ଶବ୍ଦର ଅର୍ଥ ହେଉଛି 'କଳାବିଳାସ ନିପୁଣ' ବା ଅନ୍ୟାର୍ଥରେ "କଳାବିଳାସ ଦଗ୍ଧାତ୍ମ ବିଦଗ୍ଧ ଇତ୍ୟଭିଧୀୟତେ" ଓ 'ଚିନ୍ତାମଣି ଶବ୍ଦର ଅର୍ଥ ହେଉଛି ଅଭୀଷ୍ଟ ପୂରଣ କରେ ଯେ । 'ଚିନ୍ତାମଣି' ଏକ କାଳ୍ପନିକ ପ୍ରସ୍ତର । ସେହି ମଣିକୁ ଧାରଣ କରି ଯେ ଯାହା ଚିନ୍ତା କରିବ, ସେ ତାହା ଲାଭ କରିବ ବୋଲି କବିପ୍ରସିଦ୍ଧି ରହିଅଛି । ସେହିପରି କୃଷ୍ଣଚନ୍ଦ୍ର ଭକ୍ତମାନଙ୍କର କାମନା ପୂର୍ଣ୍ଣ କରିଥାନ୍ତି ବୋଲି ଶ୍ରୀକୃଷ୍ଣଙ୍କର ଅନ୍ୟ ନାମ ଚିନ୍ତାମଣି ।

ଏଠାରେ ବିଦଗ୍ଧ ଚିନ୍ତାମଣିର ଅର୍ଥ ହୋଇଛି ଯେ ବିଭିନ୍ନ କଳା ବା ଚତୁଃଷଷ୍ଠୀ କଳାନିପୁଣ କୃଷ୍ଣଚନ୍ଦ୍ର । ରୂପ ଗୋସ୍ୱାମୀକୃତ 'ବିଦଗ୍ଧମାଧବ' ନାଟକର ନାମକରଣ ଯେଉଁ ଅର୍ଥ ପ୍ରତିପାଦନ କରିଥାଏ, ବିଦଗ୍ଧ ଚିନ୍ତାମଣି ମଧ୍ୟ ଅନୁରୂପ ଅର୍ଥ ପ୍ରଦାନ କରିଥାଏ ଏବଂ ଉଭୟ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଲୀଳାରେ ଶ୍ରୀକୃଷ୍ଣଙ୍କର ମଧୁର ସ୍ୱରୂପ ଓ ମଧୁର ଲୀଳା ମାଧ୍ୟମରେ ତାଙ୍କର କଳାନୈପୁଣ୍ୟ ମୂର୍ତ୍ତିମନ୍ତ ହୋଇଉଠିଛି ।

କବି ତାଙ୍କର ପରିପକ୍ୱ ଶେଷ ଜୀବନରେ ଅର୍ଥାତ୍ ଖ୍ରୀ: ୧୮୦୯-୧୦ ମଧ୍ୟରେ ବିଦଗ୍ଧ ଚିନ୍ତାମଣି ରଚନା କରୁଥିଲେ । ମାତ୍ର ସେ ୯୭ଟି ଛାନ୍ଦ ରଚନା କରି ଇହଧାମ ପରିତ୍ୟାଗ କଲେ ଓ ତାଙ୍କର ଅମର କାବ୍ୟ ଅସମ୍ପୂର୍ଣ୍ଣ ରହିଗଲା । ତଥାପି ଏହି ଅସମ୍ପୂର୍ଣ୍ଣ କାବ୍ୟରେ ବିଦଗ୍ଧ ଚିନ୍ତାମଣିର ଅଭୀଷ୍ଟ ପରିକଳ୍ପନା ପ୍ରାୟ ରୂପାୟିତ ହୋଇଛି କହିଲେ ଭୁଲ ହେବ ନାହିଁ ।

ରସଗ୍ରାହୀ ପଣ୍ଡିତ ଲୋକମାନଙ୍କ ଏ କାବ୍ୟ ପାଠକରିବା ନିମିତ୍ତ କବି କାବ୍ୟର ବିଭିନ୍ନ ସ୍ଥଳରେ ଆହ୍ୱାନ ଜଣାଇ ଅଛନ୍ତି । ଯେପରି—

ବିଦଗ୍ଧ ବିଦଗ୍ଧ ଚିନ୍ତାମଣି ଯେତେ
ଶ୍ୟାମ ସାମନ୍ତସିଂହାର କରିଇ ଲୟେ । (ଛା. ୨।୧୦)

ଧୀର ଜନଙ୍କର ହୃଦୟ ହାର ସେ । ବୋଲେ ସାମନ୍ତସିଂହାର ଯେ
କୃଷ୍ଣଲୀଳା ଗୀତ ଶୁଣି ମନକୁ ହରିବ ନାହିଁ କାହାର ଯେ । (ଛା. ୩।୨୭)
ରସାନନ୍ଦେ ଲୀଳା ରସ । ସେଥିରେ ନ ଥାଇ କ୍ଲେଶ ।
ରସାରେ ସାମନ୍ତ ସିଂହାର-ସାମନ୍ତ ବୃଷଭାନୁ ସୁତାଈଶ ହେ ।
ସୁପଣ୍ଡିତେ । (ଛା. ୧୫।୨୪)

## ବିଦଗ୍ଧ ଚିନ୍ତାମଣି କାବ୍ୟର ବିଷୟବସ୍ତୁ—

ବିଦଗ୍ଧ ଚିନ୍ତାମଣି ଏକ ଅସମାପ୍ତ କାବ୍ୟ ହେଲେ ହେଁ ଏଥିରେ ରାଧା ଏବଂ ଶ୍ରୀକୃଷ୍ଣଙ୍କର ମଧୁର ବୃନ୍ଦାବନଲୀଳା ମୁଖ୍ୟତଃ ସ୍ଥାନଲାଭ କରିଛି । ବିରହ ଓ ମିଳନର ଉତ୍ସରେ ସମଗ୍ର କାବ୍ୟ ପରିପ୍ଲାବିତ ହୋଇଉଠିଛି ଛନ୍ଦେ ଛନ୍ଦେ ।

କବି ସଂକ୍ଷେପ ଭାବରେ କାବ୍ୟର ଦ୍ୱିତୀୟ ଓ ତୃତୀୟ ଛାନ୍ଦରେ ଯଥାକ୍ରମେ ଶ୍ରୀକୃଷ୍ଣ ଓ ରାଧାଙ୍କର ଜନ୍ମଚରିତ ବର୍ଣ୍ଣନା କରିଅଛନ୍ତି । ଦୁଷ୍ଟ ଅସୁରକୁଳର ଅତ୍ୟାଚାରରେ ପୃଥିବୀ ଭୀତତ୍ରସ୍ତ ହୋଇପଡ଼ିବାରୁ ଓ ସାଧୁସନ୍ଥ ଲୋକେ ଉତ୍ପୀଡ଼ିତ ହେବାରୁ ମୁନିମାନେ ବ୍ରହ୍ମାଙ୍କ ନିକଟରେ ପ୍ରାର୍ଥନା କଲେ ଓ ବ୍ରହ୍ମା କ୍ଷୀରସିନ୍ଧୁଶାୟୀ ବିଷ୍ଣୁଙ୍କ ନିକଟରେ ଏହାର ପ୍ରତିକାର ଲୋଡ଼ିଲେ । ଫଳରେ ଅନନ୍ତଶାୟୀ ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ ଯେ, ସେ କୃଷ୍ଣ ଓ ବଳରାମ ରୂପରେ ଗୋପରେ ଜନ୍ମ ହୋଇ ଅସୁର ବଂଶକୁ ନିଧନ କରିବେ । ଫଳରେ କୃଷ୍ଣଚନ୍ଦ୍ର ଦେବକୀ ଗର୍ଭରେ ଓ ବଳରାମ ରୋହିଣୀଙ୍କ ଗର୍ଭରେ ଜନ୍ମଲାଭ କଲେ । ବସୁଦେବ ଶ୍ରୀକୃଷ୍ଣଙ୍କ ବିନାଶ ଭୟରେ ତାଙ୍କୁ ନନ୍ଦଘରେ ନେଇ ରଖିଲେ ଓ ପରେ ପରେ ତାଙ୍କର ବାଲ୍ୟଲୀଳା ଛଳରେ ପୂତନା, ତୃଣ, ଶକଟା, ବକା, ଅଘା ଓ ଯମଳାର୍ଜ୍ଜୁନ ପ୍ରଭୃତି ଦୁଷ୍ଟ ଅସୁରମାନଙ୍କୁ ବଧ କଲେ; କିନ୍ତୁ ଲକ୍ଷ୍ୟ କରିବାର କଥା ଯେ, ଏଠାରେ କଂସନିଧନ ପ୍ରସଙ୍ଗ ଆଦୌ ଉଲ୍ଲେଖ ନ କରି କେବଳ ବ୍ରଜର ମଧୁର ଲୀଳାରେ ସ୍ୱୀୟ ଦୃଷ୍ଟିଭଙ୍ଗୀ ଦୃଢ଼ୀଭୂତ କରିଅଛନ୍ତି ।

ବିଦଗ୍ଧ ଚିନ୍ତାମଣିର ଚତୁର୍ଥ ଛାନ୍ଦରେ ରାଧାଙ୍କର ଜନ୍ମ ବର୍ଣ୍ଣିତ । ସୂର୍ଯ୍ୟବଂଶୀ ରାଜା ବୃଷଭାନୁ ଓ ରାଣୀ କୀର୍ତ୍ତିଦାଙ୍କର ଔରସରେ ମହାଲକ୍ଷ୍ମୀ ସ୍ୱରୂପା ଏକ ଅପୂର୍ବ ସୁନ୍ଦରୀ କନ୍ୟାର ଜନ୍ମ ହେଲା ଓ ଦୁର୍ବାସା ମହର୍ଷି ତାଙ୍କର ନାମ ଦେଲେ ରାଧିକା । ରାଧିକା ଶବ୍ଦର ତତ୍ତ୍ୱ ହେଉଛି ଯେ ତାଙ୍କଠାରେ ରଶ୍ମି, ସୁବର୍ଣ୍ଣ, ମଧୁରରସ ଓ ଅଗ୍ନିବୀଜ ଏହି ଗୁଣଚାରିଗୋଟି ବିଭବ ପ୍ରାଧାନ୍ୟଲାଭ କରିଥିଲା ।

ଦୁର୍ବାସା । ଜାତକବିଧି ସିଦ୍ଧିମନ୍ତ୍ର ।
ର ରଶ୍ମି, ରସ ଅଗ୍ନି ବୀଜ ଅଧିକା ଯେଣୁ ରାଧିକା ନାମ ଦେଲେ ତ ।
(ଛା. ୪।୨)

କନ୍ୟା ବିଂଶତି ପର୍ଯ୍ୟନ୍ତ ନେତ୍ର ଉନ୍ମୀଳନ ନ କରିବାରୁ ପୌର୍ଣ୍ଣମାସୀ ଯଶୋଦାଙ୍କ ସହିତ ଆସି ସେଠାରେ ଉପସ୍ଥିତ ହେଲେ ଓ ଯଶୋଦା ଶ୍ରୀକୃଷ୍ଣଙ୍କୁ ଧାରଣ କରି ରାଧାଙ୍କୁ ଦେଖିବା ମାତ୍ରେ ରାଧାଙ୍କର ଚକ୍ଷୁ ଉନ୍ମୀଳିତ ହେଲା ଓ ସେ ପ୍ରଥମେ ଶ୍ରୀକୃଷ୍ଣଙ୍କର ମୁଖ ଦର୍ଶନ କଲେ । ସର୍ବେନ୍ଦ୍ରିୟ ଆନନ୍ଦବର୍ଦ୍ଧନକାରୀ ଶ୍ରୀକୃଷ୍ଣ ଯଶୋଦାଙ୍କ ସ୍ତନରୁ କ୍ଷୀରପାନ କରିଥିଲେ ଓ ସେହି ସ୍ତନରୁ ରାଧା ମଧ୍ୟ କ୍ଷୀରପାନ

କଲେ । ଏହି ଘଟଣାରେ ରାଧିକାଙ୍କ ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । କବି ଏହି ଘଟଣାର ଚମତ୍କାର ବର୍ଣ୍ଣନ କରିଛନ୍ତି—

'କୃଷ୍ଣ ସର୍ବେନ୍ଦ୍ରିୟ ଆହ୍ଲାଦିନୀ ସର୍ବେନ୍ଦ୍ରିୟ ଆନନ୍ଦ ବରଧନ
କୃଷ୍ଣ—ଅଧରାମୃତ କ୍ଷୀର ପ୍ରଥମେ ଯଶୋଦା କରାଇଲେ ପାନ
ଏ କଥା, ସନ୍ଦନୀ କଳାପ-ସମ୍ମତ
ଜନକ ଜନନୀ ସେହିଦିନୁ ଦିନୁ ଦିନୁ ଆନନ୍ଦ କଲେ ମତ ।

ଏହାପରେ ଯଥାକ୍ରମେ ୩ୟ ଓ ୪ର୍ଥ ଛାନ୍ଦରେ କବି କୃଷ୍ଣ ଓ ରାଧାଙ୍କର ବାଲ୍ୟ ଓ କୈଶୋରର କମନୀୟ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଉଭୟଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ପରିକଳ୍ପନାରେ ବିଦଗ୍ଧ ଚିନ୍ତାମଣି କାବ୍ୟ ଆଦ୍ୟରୁ ହିଁ ପଦେ ପଦେ ଛବିଳ ଓ ସୁଧିମାର୍ଜ୍ଜିତ ହୋଇଉଠିଛି ।

ପଞ୍ଚମ ଛାନ୍ଦରେ ବୃନ୍ଦାବନରେ କୃଷ୍ଣଚନ୍ଦ୍ର, ମଧୁମଙ୍ଗଳ, ସୁଦାମ, ସୁବଳ ପ୍ରଭୃତି ସଖାମାନଙ୍କ ଗହଣରେ ମଧୁର ଆଳାପରେ ନିରତଥିବା ସମୟରେ ପୌର୍ଣ୍ଣମାସୀ ପ୍ରବେଶ କଲେ । ପୌର୍ଣ୍ଣମାସୀ ଆଗରୁ ଜାଣିଥିଲେ ଯେ, କୃଷ୍ଣ ଅବତାର ଭାବରେ ଗୋପରେ ଜନ୍ମ ପରିଗ୍ରହଣ କରିଅଛନ୍ତି ଅବ୍ୟକ୍ତ ମଧୁର ପ୍ରେମଲୀଳାକୁ ମର୍ତ୍ତ୍ୟରେ ବ୍ୟକ୍ତ କରିବା ପାଇଁ । ଏହି ମଧୁର ପ୍ରେମଲୀଳାରେ ପରକୀୟା ରସର ପରିପୁଷ୍ଟି ଯେ ଘଟିବ, ଏ କଥା ସେ ମଧ୍ୟ ଜ୍ଞାତ ଥିଲେ । କବି ବିଷୟରେ ବର୍ଣ୍ଣନା କରିଛନ୍ତି ଏହିପରି ଭାବରେ—

"ସେ ପଦେ ହାସ୍ୟାସ୍ପଦ ରାଜା କରନ୍ତେ ଶୁଣି ଦୁର୍ବାସା ପୂର୍ଣ୍ଣମାସୀ
ଶାପ ପ୍ରବର୍ତ୍ତାଇ ସେ ସତ୍ୟକୁ ସ୍ଥାୟୀ ନିଜ ଶ୍ରେୟ ମନେ ମନାସି ।
ଗୋବିନ୍ଦ । ପ୍ରେମସର୍ଜକ ବିଧି ଯେଣୁ ।
ପରକୀୟ ରସ ଉଲ୍ଲାସ ବିଶେଷ ହେବାର ଭିଆଇଲେ ତେଣୁ ।"

(ଚି. ୪।୧୨)

ପୌର୍ଣ୍ଣମାସୀ ଶ୍ରୀକୃଷ୍ଣଙ୍କୁ ସ୍ୱୀୟ ପରିଚୟ ଦେଇ ରାଧାନାମ ଶୁଣାଇ ତାଙ୍କ ହୃଦୟରେ ଅନୁରାଗ ବୀଜ ବପନ କରିଅଛନ୍ତି ଓ ଅନ୍ୟଦିଗରେ ପୌର୍ଣ୍ଣମାସୀ ଅନ୍ୟ ଏକ ଦିନରେ ରାଧାଙ୍କ ନିକଟରେ ପହଞ୍ଚି ରାଧାଙ୍କୁ କୃଷ୍ଣନାମ ଶୁଣାଇଛନ୍ତି । ରାଧା ତାଙ୍କର ଅଭୀଷ୍ଟଲାଭ କରିବା ନିମିତ୍ତ କାମ୍ୟକବନରେ ସୂର୍ଯ୍ୟ ଅଛନ୍ତି ଓ ତାଙ୍କୁ ଦ୍ୱାରା ପୂଜା କଲେ ସର୍ବସିଦ୍ଧି ଲାଭକରିବେ—ଏହି ବିଷୟ ଶ୍ଳେଷାର୍ଥରେ ଜଟିଳାକୁ କହନ୍ତେ ପୌର୍ଣ୍ଣମାସୀଙ୍କ କଥାରେ ଜଟିଳା ସନ୍ତୁଷ୍ଟ ହେଲେ ଓ ରାଧାଙ୍କୁ ସୂର୍ଯ୍ୟ ପୂଜା କରିବା ନିମିତ୍ତ ଅନୁମତି ଦେଲେ ।

ଏହା ପରେ ପୌର୍ଣ୍ଣମାସୀଙ୍କର ସାହଚର୍ଯ୍ୟରେ ଶ୍ରୀକୃଷ୍ଣଙ୍କର ଚନ୍ଦ୍ରାବଳୀବଲ୍ଲଭ ଗୋବର୍ଦ୍ଧନ ମଲ୍ଲଠାରୁ ଗୋବର୍ଦ୍ଧନପ୍ରାପ୍ତି ଓ ଗୋବଦ୍ୟା ଶିକ୍ଷା; ଚନ୍ଦ୍ରାବଳୀ ଦର୍ଶନ, ଚନ୍ଦ୍ରାବଳୀଙ୍କ ନିକଟକୁ ଶ୍ରୀକୃଷ୍ଣଙ୍କର ଓ ଶ୍ରୀକୃଷ୍ଣ ନିକଟକୁ ଚନ୍ଦ୍ରାବଳୀଙ୍କର ଚିଟାଉ ଶ୍ରୀକୃଷ୍ଣଙ୍କର ଉତ୍କଣ୍ଠା, ବନଭ୍ରମଣ ଓ ବଂଶୀପ୍ରାପ୍ତି, ଜଳକ୍ରୀଡ଼ା ଓ ବସ୍ତ୍ର ହରଣ, କଦମ୍ବମୂଳରେ କୃଷ୍ଣଚନ୍ଦ୍ରଙ୍କର ବଂଶୀଧ୍ୱନି, ଦୂତୀର ଶ୍ରୀକୃଷ୍ଣଙ୍କ ନିକଟରେ ରାଧା ଗୁଣ ଓ ରାଧାଙ୍କ ନିକଟରେ କୃଷ୍ଣ ଗୁଣ କଥନ, କୃଷ୍ଣରୂପ ବର୍ଣ୍ଣନ, ରାଧାଙ୍କର ସ୍ୱପ୍ନରେ କୃଷ୍ଣ ରୂପ ଦର୍ଶନ ଓ ସ୍ୱପ୍ନାନୁଚିନ୍ତା, କୃଷ୍ଣଙ୍କର ସ୍ୱପ୍ନଦର୍ଶନ ଓ ସେହିପରି ସ୍ୱପ୍ନାନ୍ତର ବିଳାପ ପ୍ରଭୃତି କବି ବର୍ଣ୍ଣନା କରିଅଛନ୍ତି । ଏଥିମଧ୍ୟରୁ ରାଧାଙ୍କର ସ୍ୱପ୍ନଦର୍ଶନ ଛାନ୍ଦ ବିଶେଷ ଭାବରେ କବିତ୍ୱପୂର୍ଣ୍ଣ ଅଟେ ।

ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କରେ ଯଦିଓ ପ୍ରେମର ବର୍ଣ୍ଣନା ବାହୁଲ୍ୟ ଦେଖାଯାଇଥାଏ, ତଥାପି କୌଣସି କାବ୍ୟରେ ପ୍ରେମତତ୍ତ୍ୱର ବିଶ୍ଳେଷଣ ନାହିଁ । ଭକ୍ତ ପ୍ରେମିକ କବି ଅଭିମନ୍ୟୁଙ୍କ କାବ୍ୟର ବିଷୟବସ୍ତୁରେ ଏକ ପ୍ରଧାନ ବୈଶିଷ୍ଟ୍ୟ ହେଲା ପ୍ରେମତତ୍ତ୍ୱର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ । ବିଦଗ୍ଧ ଚିନ୍ତାମଣିରଁ ଛା. ୩୯, ୪୨, ୯୬ ଓ ୯୪—ଏହି ଗୁଟିଗୋଟି ଛାନ୍ଦରେ କବି ରାଧାକୃଷ୍ଣ ପ୍ରେମତତ୍ତ୍ୱ ଓ ତାହାର ଯେଉଁ ତାତ୍ତ୍ୱିକ ବିଶ୍ଳେଷଣ ଦେଇଅଛନ୍ତି, ତାହାର ତୁଳନା ଅନନ୍ୟସ୍ୱ ।

୪୮ ଛାନ୍ଦରେ ରାଧାଙ୍କର ସଖୀ ନିକଟରେ ଶ୍ରୀକୃଷ୍ଣଙ୍କର ଗୁଣକଥନ ସମ୍ବନ୍ଧୀୟ ଉକ୍ତିସମୂହ ବିଶେଷ ଭାବରେ ରସାଳ ଓ କବିତ୍ୱପୂର୍ଣ୍ଣ ହୋଇଛି । ଏହି ଛାନ୍ଦଟିରେ କବି ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ଏପରି ବର୍ଣ୍ଣନା କରିଛନ୍ତି ଓ ତହିଁରେ ବିପ୍ରଲମ୍ଭ ଶୃଙ୍ଗାର ଏପରି ସନ୍ନିବେଶିତ ହୋଇଛି ଯେ ତାହା ଯେ କୌଣସି ପାଠକର ହୃଦୟକୁ ରସାପ୍ଲୁତ କରିଦେଇଥାଏ ।

"ରାଧା ଧରି ସଖୀ କର । ବୋଲନ୍ତି ଆକଟ ଆଉ ନ କର ଗୋ ।
ଲାଜ ଭୟ ଛାଡ଼ିଲି ନିକର । ସଜନି ଗୋ ।
ଘନଶ୍ୟାମ ଗୁଣମାନ । ଶିଖିଅଛି କି ମୋ ଧୈର୍ଯ୍ୟ ଗୁମାନ ଗୋ ।
ମନ ଦହୁଛି ତା ସନମାନ । ସଜନି ଗୋ ।
ତୁଛ ମୋହିବା ମୁନିଙ୍କି । ତାଙ୍କୁ ପ୍ରୀତିପଣେ ଯୋଗ୍ୟ ମୁଁ କି ଗୋ
ଅଳଙ୍କାର ଯେ ତ ଅବନୀକି । ସଜନି ଗୋ ।"

ଇତ୍ୟାଦି ।

ଏହାପରେ ଯୁଗଳ ଅନୁରାଗ କଥନ, ଛା. ୫୯ରେ 'ଛିଦଗ୍ଧା ରାଧା'ଙ୍କର ବେଶ ବର୍ଣ୍ଣନା ଭକ୍ତକବିଙ୍କ ଲାବଣ୍ୟବତୀର ବେଶବର୍ଣ୍ଣନା ଛାନ୍ଦର ଅନୁରୂପ ଅଟେ । ରାଧାଙ୍କର ବେଶକରଣ ପରେ ତାଙ୍କର ସୂର୍ଯ୍ୟପୂଜା ନିମିତ୍ତ ଗମନ ଓ ସେଠାରେ

ବିପ୍ରରୂପୀ ଶ୍ରୀକୃଷ୍ଣଙ୍କର ମଜାନିମିତ୍ତ ସଖାମାନଙ୍କ ସହିତ ଆଗମନ ଓ ଜ୍ୟୋତିଷ ରୂପେ ରାଧାଙ୍କର ଭବିଷ୍ୟତ କଥନ ବିଶେଷ ଭାବରେ ଶ୍ଳେଷମୂଳକ ହୋଇଉଠିଛି ।

ଛା. ୭୩ରେ ଶ୍ରୀକୃଷ୍ଣଙ୍କର ଜନ୍ମୋତ୍ସବରେ ଶ୍ରୀରାଧାଙ୍କର ପାକକର୍ମ ବହୁ ବୈଶିଷ୍ଟ୍ୟପୂର୍ଣ୍ଣ ହୋଇଉଠିଛି । ରାଧା ଓ ନଂଆଗରର ବୋହୂ ପରି ବହୁପ୍ରକାର ଓଡ଼ିଆ ଖାଦ୍ୟପେୟର ବ୍ୟବସ୍ଥା କରିଛନ୍ତି ଜଣେ ଅତି କର୍ମକୁଶଳା ସୁନିପୁଣା ଗୃହିଣୀ ପରି ।

ବିଦଗ୍ଧ ଚିନ୍ତାମଣିର ୭୪ ଛାନ୍ଦରେ ଶ୍ରୀକୃଷ୍ଣଙ୍କର ଗୋ ଚାରଣବିଧି ବର୍ଣ୍ଣିତ ଓ ଏଥିରେ ଯଶୋଦାଙ୍କର ବାତ୍ସଲ୍ୟମମତା ଅତି ମର୍ମସ୍ପର୍ଶୀ । ସରଳ ଭାଷାରେ ରୂପାୟିତ ହୋଇଛି । ଯେପରି—

'ଷଡ ହରଣୀବିଧିରେ ରବି ଅସ୍ତକୁ ବସିରେ
ତୋ ଆସିବା ବେଳ ଚାହିଁ ଥାଇ ରେ
ଦାଣ୍ଡକୁ ଯାଏଁ ଦଉଡ଼ି ତୁ ମୋର ଅଞ୍ଚଳଉଡ଼ି
ତୋ ବିନା କି କରି ଜିଅଇ ରେ । ୩୦ ।
ତୁ ମୋର ରଙ୍କପସରା ତୋ ବିନୁ ନାହିଁ ଦୋସରା
କାହା ମୁଖ ଚାହିଁ ନେବି ଦିନ ରେ
ବୃଦ୍ଧକାଳରେ ନନ୍ଦନ ତୁ ମୋର ହୃଦଚନ୍ଦନ
କଣ୍ଠହାର ଜୀବର ଜୀବନ ରେ । ୩୧ ।

ବିଦଗ୍ଧ ଚିନ୍ତାମଣିର ପରବର୍ତ୍ତୀ ଛାନ୍ଦଗୁଡ଼ିକରେ ଶ୍ରୀକୃଷ୍ଣ ତଥା ଶ୍ରୀରାଧାଙ୍କର ପରସ୍ପର ମିଳନ ନିମିତ୍ତ ବ୍ୟାକୁଳତା ପ୍ରକାଶ ପାଇଛି ଓ ଛାନ୍ଦଗୁଡ଼ିକ ବିଶେଷ ଭାବରେ କରୁଣ ତଥା ଶୃଙ୍ଗାରରସାସକ୍ତ ହୋଇଉଠିଛି ।

ଗ୍ରନ୍ଥର ୮୦ ଛାନ୍ଦରୁ କ୍ରମେ ରାଧା ଓ କୃଷ୍ଣଙ୍କର ମିଳନ ପର୍ଯ୍ୟାୟ ଆରମ୍ଭ ହୋଇଛି । ଏହି ଛାନ୍ଦରେ ରାଧାଙ୍କର ଶୁକ୍ଲାଭିସାର ବର୍ଣ୍ଣିତ ହୋଇଛି । ଚନ୍ଦ୍ରର ଶୁଭ୍ରକିରଣରେ ବୃନ୍ଦାବନର ତରୁଲତା ପରିପ୍ଲାବିତ ହୋଇଛି । ଚନ୍ଦ୍ରପଥରୁ ଜ୍ୟୋତ୍ସ୍ନାର ରଜତ ସ୍ରୋତ ଝରିପଡ଼ି ଝର ହୋଇଛି । କୁଞ୍ଜଲତାର ନିଭୃତ କୋଣରେ ମିଳନର ମଧୁର ରାଗିଣୀ ଅତି ଗୋପନରେ ବାଜିଉଠୁଛି—ବୃନ୍ଦାବନର ପରିବେଶ ମିଳନ ନିମିତ୍ତ ବ୍ୟାକୁଳ ଓ ପ୍ରାଣବନ୍ତ ହୋଇଉଠିଛି ।

ଏହିପରି ସୁମଧୁର ମୁହୂର୍ତ୍ତରେ ରାଧା ଏବଂ କୃଷ୍ଣଙ୍କର ଚିର ଆକାଂକ୍ଷିତ ମିଳନ କବି କରାଇଛନ୍ତି । ଏହି କାବ୍ୟର ପ୍ରଧାନ ବିଷୟ ହେଲା ବୃନ୍ଦାବନଲୀଳା । ଏଠାରେ ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ ରାସଲୀଳାର ବର୍ଣ୍ଣନା ନାହିଁ, ଅଛି

ଶ୍ରୀକୃଷ୍ଣଙ୍କର କୈଶୋର ଲୀଳା—ଯହିଁରେ ପ୍ରଧାନ ନାୟକ ହେଉଛନ୍ତି ଶ୍ରୀକୃଷ୍ଣ ଏବଂ ଶ୍ରୀରାଧା । ପୌର୍ଣ୍ଣମାସୀ ପ୍ରଧାନ ଉପଚରିତ ଭାବରେ ରାଧା ଏବଂ କୃଷ୍ଣଙ୍କର ମିଳନ କରାଇ ବିଷୟବସ୍ତୁରେ ପୂର୍ଣ୍ଣତା ଆନୟନ କରାଇ ଅଛନ୍ତି । ରାଧା ଏବଂ କୃଷ୍ଣଙ୍କର ମିଳନ ଘଟିଥିବାର ଏବଂ କୃଷ୍ଣଚନ୍ଦ୍ରଙ୍କର ଅଧିକାଂଶ ବୃନ୍ଦାବନଲୀଳା ଏଥିରେ ବର୍ଣ୍ଣିତ ହୋଇ-ଥିବାରୁ ପାଠକ ବିଷୟବସ୍ତୁ ବା କାବ୍ୟରେ ଅପୂର୍ଣ୍ଣତାଥିବାର ଆଦୌ ଉପଲବ୍ଧି କରିପାରି ନାହିଁ ।

## ବିଦଗ୍ଧ ଚିନ୍ତାମଣି ଓ ବିଦଗ୍ଧ ମାଧବ :

ଆଗରୁ କୁହାଯାଇଛି ଯେ, କବି ବିଦଗ୍ଧ ଚିନ୍ତାମଣି ରଚନା କରିବାର ପ୍ରେରଣା ରୂପଗୋସ୍ୱାମୀକୃତ ବିଦଗ୍ଧ ମାଧବ ନାଟକରୁ ଲାଭ କରିଅଛନ୍ତି । ବିଦଗ୍ଧ ଚିନ୍ତାମଣିରେ ବିଦଗ୍ଧ ମାଧବ ନାଟକତୁଲ୍ୟ ସେହି ମଧୁର ବୃନ୍ଦାବନଲୀଳା ବର୍ଣ୍ଣିତ ହୋଇଛି । ବିଦଗ୍ଧ ମାଧବର ଉପସଂହାରରେ କୁହାଯାଇଛି ।—

'ରାଧାବିଳାସ ବୀତାଙ୍କ ଚତୁଃଷଷ୍ଟି କଳାଧର୍ମେ

ବିଦଗ୍ଧମାଧବଂ ସାଧୁ ଶୀଳୟନ୍ତୁ ବିଚକ୍ଷଣାଃ ।'

ଅର୍ଥାତ୍ ଏହି ନାଟକରେ ଚତୁଃଷଷ୍ଠୀ କଳାପୂର୍ଣ୍ଣ ବିଭିନ୍ନ ଅଙ୍କରେ ରାଧାଙ୍କର ବିଳାସ ରୂପାୟିତ ହୋଇଛି । ପଣ୍ଡିତ ଓ ସାଧୁଜନ ସମୂହ ଏହାର ଅନୁସରଣ କରନ୍ତୁ ।

ଉଭୟ ଗ୍ରନ୍ଥର ବିଷୟବସ୍ତୁ ଏକ ହେଲେ ହେଁ ବିଦଗ୍ଧ ମାଧବ ନାଟକରେ ଅନେକ ନୂତନତ୍ୱ ରହିଛି ଓ ସେହିପରି ବର୍ଣ୍ଣନାରେ ମଧ୍ୟ ପଦ୍ମା, ଲଳିତା, ବିଶାଖା, ପୌର୍ଣ୍ଣମାସୀ, ଜଟିଳା, ଚନ୍ଦ୍ରାବଳୀ, ସାରଙ୍ଗୀ, ବୃନ୍ଦା ଓ ନାନ୍ଦୀମୁଖୀ ପ୍ରଭୃତି ନାରୀଚରିତ୍ର ଏବଂ ମଧୁମଙ୍ଗଳ, ଅଭିମନ୍ୟୁ ଓ ସୁବଳ ପ୍ରଭୃତି ପୁରୁଷଚରିତ୍ର ପ୍ରତ୍ୟେକେ ଗତିଶୀଳ; କିନ୍ତୁ ବିଦଗ୍ଧ ଚିନ୍ତାମଣିରେ ମୁଖ୍ୟତଃ ପୌର୍ଣ୍ଣମାସୀ ରାଧା ଏବଂ କୃଷ୍ଣଙ୍କର ମିଳନରେ ସାହାଯ୍ୟ କରିଅଛନ୍ତି ।

ବିଦଗ୍ଧ ମାଧବରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର ଜନ୍ମାଦି ବୃତ୍ତାନ୍ତ, ବସ୍ତ୍ରହରଣ, ଜଳକ୍ରୀଡ଼ା, ଶ୍ରୀକୃଷ୍ଣଙ୍କର ବନଗମନ ଓ ତଜ୍ଜନିତ ଯଶୋଦାଙ୍କର ବାତ୍ସଲ୍ୟପ୍ରେମ, ପ୍ରେମତତ୍ତ୍ୱ ବା ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ସ୍ୱପ୍ନଦର୍ଶନ ପ୍ରଭୃତି ବିଷୟର ବର୍ଣ୍ଣନା ନାହିଁ; କିନ୍ତୁ ଉକ୍ତ କବିଙ୍କର କାବ୍ୟରେ ବହୁ ନୂତନତ୍ୱ ପରିସ୍ଫୁଟିତ ହୋଇଅଛି । ବିଦଗ୍ଧ ମାଧବ ନାଟକରେ ପ୍ରଥମରୁ ହିଁ ବୃନ୍ଦାବନର ମଧୁର ପରିବେଶ ମଧ୍ୟରେ ରାଧାକୃଷ୍ଣଙ୍କର ମିଳନ ନାଟକର ସୂତ୍ରପାତ ହୋଇଛି ଏବଂ ସେହି ନାଟକର ପରିସମାପ୍ତି ହିଁ ସେହି ବୃନ୍ଦାବନରେ ଘଟିଛି ।

ବିଦଗ୍ଧ ମାଧବ ବିଷୟବସ୍ତୁର ନିର୍ଯ୍ୟାସ ନେଇ ଅଭିମନ୍ୟୁ ତାଙ୍କର ବିଦଗ୍ଧ ଚିନ୍ତାମଣି କାବ୍ୟ ରଚନା କରିବା ନିମିତ୍ତ ପ୍ରଲୁବ୍ଧ ହୋଇଛନ୍ତି ଓ ସେଥିପାଇଁ ସେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ପ୍ରଭୃତି ବର୍ଣ୍ଣନା ଉପରେ ଗୁରୁତ୍ୱ ନ ଦେଇ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର କୈଶୋରଲୀଳାର ବର୍ଣ୍ଣନା ପ୍ରଧାନ ଭାବରେ କରିଅଛନ୍ତି ।

ବିଦଗ୍ଧ ମାଧବର ପ୍ରଭାବ ଆମେ ବିଦଗ୍ଧ ଚିନ୍ତାମଣିର ବିଭିନ୍ନ ସ୍ଥାନରେ ଦେଖିବାକୁ ପାଇଥାଉଁ । ଏପରିକି ବିଦଗ୍ଧ ମାଧବର କେତେକ ଶ୍ଳୋକସ୍ଥ ବର୍ଣ୍ଣନାର ପ୍ରଭାବ କବିଲେଖନୀକୁ ପ୍ରଭାବିତ କରିଛି ଯଥା :—

"ଅପଃ ଶାଲଗ୍ରାମା ପ୍ଳବନ ଗରିମୋଦ୍‌ଗାର ସାରସାଃ" ଇତ୍ୟାଦି ।

ବି: ଚି:— "ଅମ୍ବୁଯେ ହେଉ ସେ ହେଉ ଶାଲଗ୍ରାମେ ସ୍ନାନ
ଅଗ୍ରାହ୍ୟ କାହାର ପାଦୋଦକ ନାମେ ଜ୍ଞାନ ।"

ଅନ୍ୟତ୍ର— ରାଧିକାଙ୍କର ଉକ୍ତି—

"ଅକାରୁଣ୍ୟ କୃଷ୍ଣୋଯଦି ମୟିତବାବଃ କଥମିଦଂ
ମୁଧା ମା ରୋଦୀର୍ମେ କୁରୁ ପରମିମାମୁତ୍ତର କୃତମ୍
ତମାଲସ୍ୟ ସ୍କନ୍ଧେ ବିନିହିତ ଭୁଜାବଲ୍ଲରିରୟମ୍
ଯଥା ବୃନ୍ଦାରଣ୍ୟେ ଚିରମବିଚଲା ତିଷ୍ଠତି ତନୁଃ ।" ୪୭ ।

(ବି: ମା: ୨ୟ ଅଙ୍କ)

ବିଦଗ୍ଧ ଚିନ୍ତାମଣିରେ ଅନୁରୂପ ବର୍ଣ୍ଣନା ହୋଇଛି:—

ଯେବେ ଏମନ୍ତ କରି ନ ପାରିବ । ତମାଲେ କୋଳ କରାଇ ଥୋଇବ ।
କୃଷ୍ଣ ବଂଶୀ ଶୁଭୁଥିବ ଯେଣିକି । କର୍ଣ୍ଣ କରି ଦେଇଥିବ ତେଣିକି ।
ସବୁ ସଜନୀଙ୍କି । ହାତଧରି ମୁଁ ମାଗୁଛି ଏତିକି ।"

ବିଦଗ୍ଧ ମାଧବର ପ୍ରଥମ ଅଙ୍କରେ ପୁନଶ୍ଚ—

ଅଜଡ଼ଃ କମ୍ପସପାଦୀ ଶସ୍ତ୍ରାଦନ୍ୟୋ ନିକୃନ୍ତନଃ
ତାପନୋଽନୁଷ୍ଣତାଧାରଃ କୋଽୟଂ ବା ମୁରଲୀରବଃ ।

ବିଦଗ୍ଧ ଚିନ୍ତାମଣିରେ ତାହା—

"ଅନଳ ନୁହଇ ଦେହ ଦହଇ
ଅସ୍ତ୍ର ନୁହଇ ମରମେ ଭେଦଇ ।" ଇତ୍ୟାଦି ।

ଏହାଛଡ଼ା ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାରରସ, ବୃନ୍ଦାବନର ନିସର୍ଗ ପ୍ରକୃତି ବର୍ଣ୍ଣନା ପ୍ରଭୃତିରେ ବିଦଗ୍ଧ ମାଧବର ପ୍ରଭାବ ବିଦଗ୍ଧ ଚିନ୍ତାମଣିକାର କବିଙ୍କୁ

କେତେକାଂଶରେ ପ୍ରଭାବିତ କରିଛି । ରାଧାଙ୍କ ସହିତ ସଖୀମାନଙ୍କର ଓ ଅନ୍ୟ ଦିଗରେ ଶ୍ରୀକୃଷ୍ଣଙ୍କ ସହିତ ସୁବଳ, ମଧୁମଙ୍ଗଳ ପ୍ରଭୃତି ସଖାମାନଙ୍କର ଆଳାପ ବିଷୟ ବିଦଗ୍ଧ ଚିନ୍ତାମଣିରେ ରୂପାୟିତ ହୋଇଛି ।

ଶ୍ରୀ ରୂପଗୋସ୍ୱାମୀଙ୍କର ବିଦଗ୍ଧ ମାଧବ ନାଟକର ବଙ୍ଗଳା ତଥା ଓଡ଼ିଆ ଅନୁବାଦ ଓଡ଼ିଶାରେ ଏକ ଲୋକପ୍ରିୟ ଗ୍ରନ୍ଥ ଭାବରେ ପ୍ରସାର ଲାଭ କରିଥିବା ଜଣାଯାଇଥାଏ । ସୁନ୍ଦର ସୁଚୀଶିଳ୍ପ ଶୋଭିତ କାଷ୍ଠନିର୍ମିତ ପେଟିକା ମଧ୍ୟରେ ହସ୍ତଲିଖିତ ବିଦଗ୍ଧ ମାଧବ ନାଟକ ଗ୍ରନ୍ଥ ଓଡ଼ିଶା ଆର୍କାଇଭସରେ ସଂରକ୍ଷିତ ହୋଇଛି । ଏହାର ଭାଷା ବଙ୍ଗଳା କିନ୍ତୁ ଲିପି ହେଉଛି ଓଡ଼ିଆ । * ତେଣୁ ବିଦଗ୍ଧ ଚିନ୍ତାମଣିର ପାଠରେ ବିଦଗ୍ଧ ମାଧବର ଆଲୋଚନା ଯେ ଏକାନ୍ତ ପ୍ରୟୋଜନ, କହିବା ବାହୁଲ୍ୟ ହେବ ।

## ବୈଷ୍ଣବଧର୍ମର ପ୍ରାଚୀନତା: —

ଗୌଡ଼ୀୟ ବୈଷ୍ଣବ ଧର୍ମଦର୍ଶନର ସୁଦୃଢ଼ ଭିତ୍ତି ଉପରେ ଅଭିମନ୍ୟୁଙ୍କର ଧାର୍ମିକ ମତବାଦ ପ୍ରତିଷ୍ଠା ଲାଭ କରିଛି । ଏହି ଧର୍ମର ଧାରା ଖ୍ରୀ: ୧୬ଶ ଶତାବ୍ଦୀରୁ ଓଡ଼ିଶାରେ ସାମାଜିକ ଜୀବନକୁ ପ୍ରଭାବିତ କରିଆସିଛି । ଶ୍ରୀ ଚୈତନ୍ୟଙ୍କର ଓଡ଼ିଶା ଆଗମନ ହୁଏ ଖ୍ରୀ: ୧୫୦୯-୧୫୧୦ରେ ଓ ସେତେବେଳେ ଓଡ଼ିଶାର ଗଜପତି ରାଜା ଥିଲେ ପରମ ବୈଷ୍ଣବ ପ୍ରତାପରୁଦ୍ରଦେବ । ଏହି ସମୟରେ ଓଡ଼ିଶାରେ ବୈଷ୍ଣବଧର୍ମର ଉତ୍କଳ ପ୍ଲାବନ ଘଟିଥିଲେ ହେଁ ଓଡ଼ିଶାରେ ବୈଷ୍ଣବଧର୍ମର ପୁରାତତ୍ତ୍ୱ ବହୁ ପ୍ରାଚୀନ ।

ଓଡ଼ିଶା ଇତିହାସ ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ, ଖ୍ରୀ: ୫ମ-୬ଷ୍ଠ ଶତାବ୍ଦୀ ବେଳକୁ ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରତିଷ୍ଠା ଲାଭ କରିସାରିଲାଣି । ଦକ୍ଷିଣ ଓଡ଼ିଶାରେ ମାଠରମାନଙ୍କ ରାଜତ୍ୱ ସମୟରେ ବୈଷ୍ଣବଧର୍ମର ଅଭ୍ୟୁତ୍ଥାନ ଘଟିଛି । ଗଙ୍ଗବଂଶର ରାଜତ୍ୱରେ ଅନନ୍ତବର୍ମନ ଚୋଡ଼ଗଙ୍ଗଦେବ ନିଜକୁ 'ପରମବୈଷ୍ଣବ' ଭାବରେ ଅଭିହିତ କରିଥିବାର ଜଣାଯାଏ । ଏହାପରେ ଓଡ଼ିଶାର ସୁପ୍ରସିଦ୍ଧ ଗୀତକବି ଜୟଦେବ ତାଙ୍କର ଗୀତ ଗୋବିନ୍ଦ ରଚନା କଲେ ଓ ଏହି ଗ୍ରନ୍ଥଟି ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରସାର କରାଇବାରେ ବହୁ ସାହାଯ୍ୟ କଲା । ତେଣୁ ଖ୍ରୀ: ୧୨ଶ ଶତାବ୍ଦୀ

---

* ଓଡ଼ିଶା ଆର୍କାଇଭ୍ସ ନ ୧୧୫/୧୧୮ "ସନ୍ ୧୦୫୭ ମାସ ମିଥୁନ-୨୨ ଦିନ ମଙ୍ଗଳବାର ଶୁକ୍ଳ ଦ୍ୱାଦଶୀ ବେଳ ଦୁଇପହର ସମୟେ ଶ୍ରୀ ଶ୍ରୀ ବିନୋଦ ବିହାରୀ ମନ୍ଦିରରେ ଲିଖନ ସମ୍ପୂର୍ଣ୍ଣ ହେଲା ।"

ବେଳକୁ ଓଡ଼ିଶାରେ ଯେଉଁ ବୈଷ୍ଣବ ଧର୍ମର ସୂତ୍ରପାତ ଘଟିଥିଲା, ତହିଁରେ ଆମେ ସର୍ବପ୍ରଥମେ ପ୍ରେମଭକ୍ତିର ସନ୍ଧାନ ପାଇଥାଉଁ । ଏହାଛଡ଼ା ଖ୍ରୀ: ୧୫ଶ ଶତକରେ ଗଜପତି କପିଳେନ୍ଦ୍ରଦେବଙ୍କ ସମୟରେ ଓଡ଼ିଶାରେ ବୈଷ୍ଣବଧର୍ମର ପ୍ରସାର ଘଟିଥିବାର ଜଣାପଡ଼େ । ଖ୍ରୀ: ୧୨ଶ—ଖ୍ରୀ: ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଗୋପୀନାଥ ପୂଜା ପ୍ରଚଳିତ ଥିଲା ଏବଂ ବୈଷ୍ଣବଧର୍ମର ଏହି ପରିସର ମଧ୍ୟରେ ରାଧାକୃଷ୍ଣ ଓ ଗୋପୀମାନଙ୍କର ମଧୁରଲୀଳା ସହିତ ପ୍ରେମଭକ୍ତିର ଉଦ୍ଭବ ଘଟିଥିଲା ।

ତେଣୁ ଅନେକ ଆଲୋଚକ କହନ୍ତି ଯେ, ଶ୍ରୀ ଚୈତନ୍ୟ ପ୍ରଚାରିତ ବୈଷ୍ଣବଧର୍ମ ଓଡ଼ିଶା ଭୂଇଁରେ ନୂତନ ନୁହେଁ । ନିଜେ ମଧ୍ୟ ଶ୍ରୀଚୈତନ୍ୟ ଚରିତାମୃତରେ କହିଅଛନ୍ତି ଯେ, ରାଧାକୃଷ୍ଣ ପ୍ରେମତତ୍ତ୍ୱ ରାୟ ରାମାନନ୍ଦଙ୍କୁ ଜଣାଥିଲା ଏବଂ ସେ ତାହାଙ୍କୁ ଉକ୍ତ ପ୍ରେମତତ୍ତ୍ୱ ଶିକ୍ଷା ପ୍ରଦାନ କରିଥିଲେ ।

(ଖ) "ବୈଷ୍ଣବ ସାହିତ୍ୟରେ ରାଧା ହିଁ କାବ୍ୟନାୟିକା ଓ ସେ ମଧୁର ବା ଉଜ୍ଜ୍ୱଳରସର ମୂଳାଧାର । ପ୍ରାଚୀନ ଭାରତୀୟ ସାହିତ୍ୟରେ ସହସ୍ର ସହସ୍ର କାବ୍ୟକବିତା ରାଧା ଏବଂ କୃଷ୍ଣଚରିତକୁ କେନ୍ଦ୍ର କରି ଗଢ଼ି ଉଠିଛି ।

ଅନେକ ଆଲୋଚକଙ୍କ ମତରେ 'ରାଧା' ଶବ୍ଦ କୃଷ୍ଣ ଯଜୁର୍ବେଦ ଠାରୁ ଆରମ୍ଭ କରି କଂକ ସଂହିତା, ମାଧ୍ୟନ୍ଦିନ ସଂହିତା ବାଜସନେୟ ସଂହିତା ଓ ଋକ୍ ପରିଶିଷ୍ଟରେ ବିଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି । ସଂସ୍କୃତ ସଂହିତା ସମୂହରେ ରାଧା ଅମୃତର ପତ୍ନୀ ଏବଂ ମାଧବପତ୍ନୀ ଭାବରେ କଥିତ । ଅନ୍ୟାନ୍ୟ କାବ୍ୟପୁରାଣାଦି ମଧ୍ୟରେ ଖ୍ରୀ. ଷଷ୍ଠ ଶତାବ୍ଦୀର ହାଲଙ୍କର ଗାଥା ସପ୍ତଶତୀ, ପଞ୍ଚତନ୍ତ୍ର, ଧ୍ୱନ୍ୟାଲୋକ, ପଦ୍ମ, ବାୟୁ, ମତ୍ସ୍ୟ ଓ ବ୍ରହ୍ମବୈବର୍ତ୍ତ ପ୍ରଭୃତି ଗ୍ରନ୍ଥମାନଙ୍କରେ 'ରାଧା' ଶବ୍ଦର ବ୍ୟବହାର କରାଯାଇଛି । ଆଲୋଚକମାନଙ୍କର ମତ ଯେ, ରାଧା ଚରିତର ଆବିର୍ଭାବ ଖ୍ରୀ: ୫ମ ଶତାବ୍ଦୀରେ ଘଟିଛି । ପ୍ରାଚୀନ ଓଡ଼ିଆ ସାହିତ୍ୟର ରାଧା ଏବଂ କୃଷ୍ଣଚରିତର ପ୍ରଥମ ଭୂୟୋବିକାଶ ଖ୍ରୀ: ୧୫ଶ ଶତାବ୍ଦୀରେ ରଚିତ ସାରଳା ମହାଭାରତରୁ ହିଁ ଲକ୍ଷ୍ୟ କରାଯାଇଥାଏ । (ଦ୍ରଷ୍ଟବ୍ୟ—ସାରଳା ମହାଭାରତରେ ରାଧା ଏବଂ କୃଷ୍ଣଚରିତ—ଅଧ୍ୟାପକ ବଂଶୀଧର ମହାନ୍ତି, ଝଙ୍କାର ୧୫ଶ ବର୍ଷ-୫ମ ସଂଖ୍ୟା ଦ୍ରଷ୍ଟବ୍ୟ)

ରାଧା ଅପେକ୍ଷା 'କୃଷ୍ଣ' ଏବଂ 'ବିଷ୍ଣୁ' ପୂଜା ବହୁ ପ୍ରାଚୀନ । ଋକ୍‌ବେଦରେ ବିଷ୍ଣୁ 'ସୂର୍ଯ୍ୟ' ଦେବତା ଅର୍ଥରେ ବ୍ୟବହୃତ । ମହାଭାରତ ଓ ପୁରାଣାଦିରେ ବାସୁଦେବ ଉପାସନାର ବର୍ଣ୍ଣନା ରହିଛି ଓ କୃଷ୍ଣଚରିତ ପ୍ରଧାନ ଚରିତ ଭାବରେ ରୂପାୟିତ ହୋଇଛି । ଆର. ଜି. ଭଣ୍ଡାରକରଙ୍କ ମତରେ ବାସୁଦେବ ଉପାସନା ଭାରତରେ ଖ୍ରୀ: ପୂ: ୪ର୍ଥ ଶତାବ୍ଦୀରୁ ପ୍ରଚଳିତ । ପୁରାଣ ଓ ଜାତକାଦିରେ ବାସୁଦେବ ମଧ୍ୟ କୃଷ୍ଣଭାବରେ ପରିଚିତ ହୋଇଅଛନ୍ତି । ପ୍ରାଚୀନ କାଳରେ ବୈଷ୍ଣବଧର୍ମରେ

ବାସୁଦେବ, ନାରାୟଣ ଓ ବିଷ୍ଣୁ ପ୍ରଧାନ ସ୍ଥାନ ଅଧିକାର କରିଥିବାର ଲକ୍ଷ୍ୟ କରାଯାଇଥାଏ ।

ଖ୍ରୀ: ୩ୟ ଶତକର କୁଷାଣମାନଙ୍କ ରାଜତ୍ୱରେ ବାସୁଦେବ କୃଷ୍ଣ (ବା ବିଷ୍ଣୁ) ପ୍ରାଧାନ୍ୟ ଲଭ କରିଅଛନ୍ତି । ଖ୍ରୀ: ୭ମ ଶତକ ବେଳକୁ ଓଡ଼ିଶା, ବଙ୍ଗ ଓ ଆସାମରେ 'କୃଷ୍ଣ ଓ ଗୋପବନିତା'ଙ୍କର ଆତ୍ମପ୍ରକାଶ ଘଟିଛି ଏବଂ ଖ୍ରୀ: ୧୨ଶ ଶତକରେ ଶ୍ରୀ ଜୟଦେବଙ୍କ ସାହିତ୍ୟରୁ କୃଷ୍ଣାବତାର ସହିତ ରାଧା ଏବଂ ଗୋପାଙ୍ଗନାମାନଙ୍କର ଲୋକପ୍ରିୟତା ପ୍ରସାର ହୋଇଛି ଏବଂ ବୈଷ୍ଣବ ଧର୍ମର ଏକ ନୂତନ ପର୍ଯ୍ୟାୟ ଆରମ୍ଭ ହୋଇଛି ।

## ଗୌଡ଼ୀୟ ବୈଷ୍ଣବ ମତବାଦ—

ଅଭିମନ୍ୟୁଙ୍କର ଧାର୍ମିକ ମତବାଦ ପ୍ରସଙ୍ଗରେ ଗୌଡ଼ୀୟ ବୈଷ୍ଣବ ମତବାଦର ସମ୍ୟକ ଆଲୋଚନା ପ୍ରୟୋଜନ । ତାହା ନ ହେଲେ ବିଦଗ୍ଧ ଚିନ୍ତାମଣିର ଭାବଧାରାରେ ପ୍ରବେଶ ଲଭ କରିବା ଏକାନ୍ତ କଷ୍ଟକର ବ୍ୟାପାର । ଭଗବଦ୍ ସାନ୍ନିଧ୍ୟ ଲଭ ପାଇଁ ପ୍ରାଚୀନ ଭାରତୀୟ ଧର୍ମର ଧାରାରେ ତିନିଗୋଟି ମାର୍ଗ ରହିଛି; ଯଥା :— (୧) ଜ୍ଞାନମାର୍ଗ, (୨) କର୍ମମାର୍ଗ, (୩) ଭକ୍ତିମାର୍ଗ । ଭକ୍ତିମାର୍ଗ ଉପରୋକ୍ତ ଦୁଇମାର୍ଗ ଅପେକ୍ଷା ଅଧିକ ସହଜ ଓ ସୁଗମ ଥିବା ହେତୁ ଗୌଡ଼ୀୟ ବୈଷ୍ଣବମାନେ ଶେଷୋକ୍ତ ମାର୍ଗକୁ ସେମାନଙ୍କ ସାଧନାର ମୂଳ ଭାବରେ ଗ୍ରହଣ କରିନେଇ ଅଛନ୍ତି । ଏହି ଭକ୍ତି ପୁଣି (କ) ସାଧନ (ଖ) ଭାବ ଓ (ଗ) ପ୍ରେମ ଏହି ତିନି ଭାଗରେ ବିଭକ୍ତ ।

ଭକ୍ତିନିଃସୃତ ପରମାନନ୍ଦ ନିକଟରେ ଜ୍ଞାନ, କୁଳ, ମାନ, ଧନ, ନିର୍ଦ୍ଧନର ସ୍ଥାନ ନାହିଁ । ସେଥିପାଇଁ ରସିକ କବି ଅଭିମନ୍ୟୁ କହିଛନ୍ତି—

> ଏମନ୍ତ ମହିମାବନ୍ତ ପ୍ରେମ ଭକ୍ତିରସ
> ଏକନିଷ୍ଠେ ଅଭିମନ୍ୟୁ କବି କରେ ଆଶ ।୧୧।
> ଐରାବତ ଗତି ଅଣିମାଦି ଭୋଗମୁକ୍ତି
> ଐଶ୍ୱର୍ଯ୍ୟାଦିରେ ମୋ ଚିତ୍ତ ନୋହିବ ଆସକ୍ତି ।୧୨।

ଏହି ବୈଷ୍ଣବଧର୍ମର ମୂଳ ତତ୍ତ୍ୱ ହେଲା ଭକ୍ତି । ଶାଣ୍ଡିଲ୍ୟ ସୂତ୍ରରେ କୁହାଯାଇଛି "ସା ପରାନୁରକ୍ତିରୀଶ୍ୱରେ" (୧-୨) ଅର୍ଥାତ୍ ଭଗବାନଙ୍କ ପ୍ରତି ଏକାନ୍ତ ଅନୁରାଗ ହିଁ ଭକ୍ତି । ଯୋଗମାର୍ଗ ବା ଜ୍ଞାନମାର୍ଗ ଅତି କଠିନ ମାର୍ଗ; ଏମାନେ ଜୀବାତ୍ମା ସହିତ ବ୍ରହ୍ମର ମିଳନ କାମନା କରିଥାନ୍ତି; କିନ୍ତୁ ଗୌଡ଼ୀୟ ବୈଷ୍ଣବମାନେ ମୁକ୍ତି ବା କାମନା କରନ୍ତି ନାହିଁ । ସେମାନେ ଭକ୍ତିଭାବରେ ବିହ୍ୱଳ ହୋଇ ରାଧା ଏବଂ କୃଷ୍ଣଙ୍କର ଲୀଳାଜନିତ

ପରମ ଆନନ୍ଦ ଉପଲବ୍ଧି କରନ୍ତି । ଶ୍ରୀ ଚୈତନ୍ୟଦେବ ଏହି ଅହୈତୁକୀ ଭକ୍ତି ସମ୍ବନ୍ଧରେ ଉଲ୍ଲେଖ କରି କହିଛନ୍ତି—

"ନ ଧନଂ ନ ଜନଂ ନ ସୁନ୍ଦରୀଂ କବିତା ବା ଜଗଦୀଶ କାମୟେ
ମମ ଜନ୍ମନି ଜନ୍ମନୀଶ୍ୱରେ ଭଗବଦ୍ ଭକ୍ତିରହୈତୁକୀ ତ୍ୱୟି ।"

ଅର୍ଥାତ୍ ସେ ଧନ, ଜନ, ସୁନ୍ଦରୀ, କବିତା ବା ଭଗବାନଙ୍କୁ କାମନା କରୁ ନାହାନ୍ତି । ଜନ୍ମଜନ୍ମାନ୍ତରେ ତାଙ୍କୁ ଯେପରି ଅହୈତୁକୀ ଭକ୍ତି ମିଳେ, ସେହି କଥା ହିଁ ସେ କେବଳ ଚାହାନ୍ତି ।

(୨) ଗୌଡ଼ୀୟ ବୈଷ୍ଣବଧର୍ମରେ ଭଗବଦ୍ ଭକ୍ତିଲାଭ କରିବା ନିମିତ୍ତ ନବଧା ଭକ୍ତିର ସୋପାନ ଗ୍ରହଣ କରାଯାଇଛି । ଯଥା—

ଶ୍ରବଣ, କୀର୍ତ୍ତନ, ବିଷ୍ଣୁ ସ୍ମରଣ, ପାଦସେବା, ଅର୍ଚ୍ଚନ,
ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ । ଯଥା—
"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ।" (ଭାଗବତ)

(୩) ଗୌଡ଼ୀୟ ବୈଷ୍ଣବଧର୍ମରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ବା ଅବତାରୀ ରୂପେ କଥିତ ଓ ବାମନ ନୃସିଂହାଦି ଅବତାର ଅଂଶ ବା କଳା ରୂପେ ସ୍ୱୀକୃତ ହୋଇଅଛନ୍ତି । ଯଥା—

ଏତେଚାଂଶ କଳାଃପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡୟନ୍ତି ଯୁଗେ ଯୁଗେ । (ଭା: ୧।୩।୨୮)

ବ୍ରହ୍ମା, ଗୋବିନ୍ଦ ବା ଈଶ୍ୱର ଏମାନେ ଏହି ଶ୍ରୀକୃଷ୍ଣଙ୍କଠାରୁ ଅଭିନ୍ନ । ଜ୍ଞାନମାର୍ଗୀମାନଙ୍କ ନିକଟରେ ସେ ବ୍ରହ୍ମ ରୂପେ, ଯୋଗୀମାନଙ୍କ ନିକଟରେ ପରମାତ୍ମା ଓ ଭକ୍ତିଧର୍ମୀମାନଙ୍କ ନିକଟରେ ସେ ଭଗବାନ ରୂପେ କଥିତ । ବ୍ରହ୍ମସଂହିତାରେ ସେହି ଭଗବାନଙ୍କ ମୂର୍ତ୍ତି ପରିକଳ୍ପିତ ହୋଇଛି ଏହିପରି ଭାବରେ । ଯଥା—

"ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ
ଅନାଦି ଆଦି ଗୋବିନ୍ଦଃ ସର୍ବକାରଣ କାରଣମ୍ ।" (୫।୧)

ବିଦଗ୍ଧ ଚିନ୍ତାମଣିରେ ଅଭିମନ୍ୟୁଙ୍କର ଅନୁରୂପ ଭକ୍ତି—

ଆଦି ଅନାଦିକାରଣ ନିର୍ଗୁଣ ସଗୁଣ
ଆତ୍ମାରାମ ସନାତନ ବ୍ରହ୍ମ ନିରୂପଣ ।
ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ରୂହି
ଇଚ୍ଛାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ବହି ।

ଏହି ତତ୍ତ୍ୱ ଅନୁଯାୟୀ ଗୌଡ଼ୀୟ ବୈଷ୍ଣବଗଣ ବୃନ୍ଦାବନର କୃଷ୍ଣଚନ୍ଦ୍ରଙ୍କୁ ସ୍ୱୟଂ ଭଗବାନ ଜ୍ଞାନ କରି ତାଙ୍କର ସୁମଧୁର ବ୍ରଜଲୀଳା ଆସ୍ୱାଦନ କରିଥାନ୍ତି । ଏଠାରେ ଅନ୍ୟ ଦିଗରେ ପ୍ରସଙ୍ଗକ୍ରମେ ଜ୍ଞାନମିଶା ଉତ୍କଳୀୟ ବୈଷ୍ଣବମାନଙ୍କର ଧର୍ମତତ୍ତ୍ୱ ଆଲୋଚନା କରିବାରେ ଜଣାଯାଏ ଯେ, ସେମାନେ ବୃନ୍ଦାବନର କୃଷ୍ଣଚନ୍ଦ୍ରଙ୍କୁ ଅବତାରୀ ଭାବରେ ଗ୍ରହଣ ନ କରି ନୀଳାଦ୍ରିବିହାରୀ ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରିଛନ୍ତି ଓ କୃଷ୍ଣ-ରାମାଦିଙ୍କୁ ଜଗନ୍ନାଥଙ୍କର ଅଂଶବିଶେଷ ରୂପେ ଉଲ୍ଲେଖ କରିଅଛନ୍ତି । ବିପ୍ର ଦିବାକର ଦାସ ତାଙ୍କର ଜଗନ୍ନାଥ ଚରିତାମୃତରେ ଲେଖିଅଛନ୍ତି—

"ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବଳା ।
କଳାକ ଷୋଳକଳା କରି
ଗୋପେ ବିହରେ ନରହରି ।"

(ଜଗନ୍ନାଥ ଚରିତାମୃତ ଅ:)

ଏହି ତତ୍ତ୍ୱର ଅନୁସରଣକାରୀ ଅଭିମନ୍ୟୁ ତାଙ୍କର ବିଦଗ୍ଧ ଚିନ୍ତାମଣିରେ—

"ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ।"

—ଲେଖିଥିବା ସ୍ଥଳେ ସେହି ରୀତିଯୁଗର ଅନ୍ୟତମ ପ୍ରଧାନ କବି ଭକ୍ତକବି ଦୀନକୃଷ୍ଣ ଉତ୍କଳୀୟ ବୈଷ୍ଣବ ହୋଇଥିବା ହେତୁ କାବ୍ୟର ଆରମ୍ଭରେ ନୀଳାଦ୍ରିନାଥ ଜଗନ୍ନାଥଙ୍କୁ ଲକ୍ଷ୍ୟ କରି ଲେଖିଅଛନ୍ତି—

"କରି ସାଧୁଜନମାନେ ମନକୁ ଯେତିକ
କରି ଧୀରେ ଧ୍ୟାନ ନୀଳାଚଳନାୟକ ।" (ର. କ. ୬।୧)

(୪) ଶ୍ରୀକୃଷ୍ଣ ଦ୍ୱାରକାଧାମରେ ପୂର୍ଣ୍ଣ, ମଥୁରାରେ ପୂର୍ଣ୍ଣତର ଓ ବୃନ୍ଦାବନ ବା ଗୋକୁଳରେ ପୂର୍ଣ୍ଣତମ । ଦ୍ୱାରକାର ଲୀଳା ଐଶ୍ୱର୍ଯ୍ୟମୟୀ ହୋଇଥିବାରୁ ଏହି ଲୀଳା ପ୍ରତି ବୈଷ୍ଣବମାନେ ତେତେ ପ୍ରାଧାନ୍ୟ ଦିଅନ୍ତି ନାହିଁ । ଏକମାତ୍ର ମାଧୁର୍ଯ୍ୟଲୀଳା ସେମାନଙ୍କର ଲକ୍ଷ୍ୟ । ଏହି ମାଧୁର୍ଯ୍ୟ ଲୀଳା ହିଁ ବୃନ୍ଦାବନର ଲୀଳା । ସଖ୍ୟ, ଦାସ୍ୟ, ବାତ୍ସଲ୍ୟ ଓ ମଧୁର (ଶୃଙ୍ଗାର) ଭାବର ଲୀଳା ବ୍ରଜରେ ଘଟିଥିବାରୁ ଏହି ଲୀଳା ନିତ୍ୟଲୀଳା ଭାବରେ କଥିତ ହୋଇଅଛି । ଯେପରି ଚୈତନ୍ୟ ଚରିତାମୃତରେ କୁହାଯାଇଛି—

ପୂର୍ଣ୍ଣ ଭଗବାନକୃଷ୍ଣ ବ୍ରଜେନ୍ଦ୍ରକୁମାର
ଗୋଲୋକେ ବ୍ରଜେର ସହ ନିତ୍ୟ ବ୍ୟବହାର ।

(ଆଦି ୨ୟ ପରିଚ୍ଛେଦ)

ଅନ୍ୟତ୍ର 'ଈଶ୍ୱର ପରମକୃଷ୍ଣ ସ୍ୱୟଂ ଭଗବାନ
ସର୍ବ ଅବତାରୀ ସର୍ବକାରଣ ପ୍ରଧାନ ।
(ମଧ୍ୟ. ୮ମ ପରିଚ୍ଛେଦ)

ବିଦଗ୍ଧ ଚିନ୍ତାମଣିରେ ମଧ୍ୟ ଅନୁରୂପ ଭାବରେ କୁହାଯାଇଛି ।
'ଈଶ୍ୱର ସ୍ୱଭବ୍‌ଧି ସ୍ୱୟଂ ଭଗବାନ ରୁହି'
(ବି. ଚି. ୧ମ ଛାନ୍ଦ)

ଯେଉଁମାନେ କୃଷ୍ଣଙ୍କର ମାଧୁର୍ଯ୍ୟମୟ ପ୍ରେମଲୀଳାର ଉପାସକ, ସେମାନେ ସାଧାରଣତଃ ଶ୍ରୀକୃଷ୍ଣଙ୍କର କିଶୋର ବୟସର ଲୀଳା ବର୍ଣ୍ଣନା କରିଥାନ୍ତି । ସେଥିପାଇଁ ଉକ୍ତି ଅଛି, "କିଶୋରବୟସ ନିତ୍ୟ ପ୍ରେମର ସ୍ୱରୂପ ।" ଏହି ଦୃଷ୍ଟିରେ ବିଦଗ୍ଧ ଚିନ୍ତାମଣିର ଲୀଳା ଶ୍ରୀକୃଷ୍ଣଙ୍କର କୈଶୋରଲୀଳା ଓ ତହିଁରେ ରାଧା ଏବଂ କୃଷ୍ଣଙ୍କୁ କବି ଅଧିକାଂଶ ସ୍ଥଳରେ 'କିଶୋର' ଏବଂ 'କିଶୋରୀ' ବୋଲି କହିଅଛନ୍ତି ।

(୫) ଗୌଡ଼ୀୟ ବୈଷ୍ଣବ ମତରେ ଜ୍ଞାନ, ଯୋଗ, ଧ୍ୟାନ, ଧାରଣା ପ୍ରଭୃତି ଅଷ୍ଟାଙ୍ଗଯୋଗ ପ୍ରଭୃତି ବୈଧୀପନ୍ଥା ପରିତ୍ୟାଗ କରି ସେସ୍ଥାନେ ଐକାନ୍ତିକୀ ଭକ୍ତିର ପ୍ରାଧାନ୍ୟ ଦେଇଥାନ୍ତି ଏବଂ ସେଥିପାଇଁ ସେମାନେ ଶାସ୍ତ୍ରାଦିର ଯୁକ୍ତି ଉପରେ ସେତେ ଜୋର ଦେଇ ନ ଥାନ୍ତି; କିନ୍ତୁ ଅନ୍ୟ ଦିଗରେ ଉତ୍କଳୀୟ ବୈଷ୍ଣବଗଣ ଜ୍ଞାନଯୋଗ ବା ଯମ, ନିୟମ, ଆସନ, ପ୍ରତ୍ୟାହାର, ପ୍ରାଣାୟାମ, ଧ୍ୟାନ, ଧାରଣା ଓ ସମାଧି ପ୍ରଭୃତି ଅଷ୍ଟାଙ୍ଗ ଯୋଗ ମଧ୍ୟ ଦେଇ ବ୍ରହ୍ମଦର୍ଶନର ପକ୍ଷପାତୀ ଓ ଶାସ୍ତ୍ରାଦି ନିୟମର ବଶୀଭୂତ ହୋଇ ବୈଧୀଭକ୍ତିର ମାର୍ଗ ଅନୁସରଣ କରିଥାଆନ୍ତି । ସେଥିପାଇଁ ଚୈତନ୍ୟ-ଚରିତାମୃତରେ କୁହାଯାଇଛି—

'ଶାସ୍ତ୍ରଯୁକ୍ତି ନାହି ମାନେ ରାଗାନୁଗାର ପ୍ରକୃତି ।'
(ମଧ୍ୟ. ୨୨ ପରିଚ୍ଛେଦ)

(୬) ଗୌଡ଼ୀୟ ବୈଷ୍ଣବଗଣ ସ୍ୱୀକାର କରନ୍ତି ଯେ, ବୈକୁଣ୍ଠାଦି ଧାମ ମଧ୍ୟରେ ଗୋଲକ ହେଉଛି ଶ୍ରେଷ୍ଠ ଧାମ । ଏହି ଗୋଲୋକ ଗୋକୁଳ ଭାବରେ ପରିଚିତ । ଏହି ଧାମରେ ଶ୍ରୀକୃଷ୍ଣଙ୍କର ପ୍ରକଟ ଓ ଅପ୍ରକଟ ଲୀଳା ସମାହିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଲୀଳା ଗୋଲକର ତିନିଲୋକ ଯଥା—ଦ୍ୱାରକା, ମଥୁରା ଓ ବୃନ୍ଦାବନରେ ପ୍ରକଟିତ ହୋଇଥାଏ । ଦ୍ୱାରକାଲୀଳା ଠାରୁ ମଥୁରାଲୀଳା ଉତ୍କୃଷ୍ଟ ଓ ମଥୁରାଲୀଳାଠାରୁ ବୃନ୍ଦାବନର ଲୀଳା ଉତ୍କୃଷ୍ଟତର ବୋଲି ବୈଷ୍ଣବମାନେ ବିବେଚନା କରିଥାନ୍ତି । ଶ୍ରୀକୃଷ୍ଣ ବୃନ୍ଦାବନ ବା ବ୍ରଜରେ ପୂର୍ଣ୍ଣତମ, ମଥୁରାରେ ପୂର୍ଣ୍ଣତର ଓ ଦ୍ୱାରକାରେ ପୂର୍ଣ୍ଣ ଭାବରେ ପ୍ରକାଶମାନ ହୋଇଥାଆନ୍ତି ।

(୭) ଗୌଡ଼ୀୟ ବୈଷ୍ଣବଗଣ କୃଷ୍ଣଚନ୍ଦ୍ରଙ୍କୁ ରସର ଆଧାର ରୂପେ ବର୍ଣ୍ଣନା କରିଥାନ୍ତି ଏବଂ ସେ ହେଉଛନ୍ତି ରସମୟୀ ଶକ୍ତି ହ୍ଲାଦିନୀ ବା ଆନନ୍ଦମୟୀ ଶକ୍ତିର ଆଧାର । ଯେ କୌଣସି ଶୁଦ୍ଧାଭକ୍ତି ମାର୍ଗର ଭକ୍ତ ମଧ୍ୟ ଏହି ହ୍ଲାଦିନୀଶକ୍ତିର ଆଶ୍ରୟ ନେଇ ଭଗବାନଙ୍କୁ ଭଜନା କରି ତାଙ୍କର ମଧୁର ଲୀଳା ଆସ୍ୱାଦନ କରିଥାଏ । ଅନ୍ୟ ଦିଗରେ ଶ୍ରୀରାଧା ମଧ୍ୟ ଗୌଡ଼ୀୟ ବୈଷ୍ଣବମାନଙ୍କ ଦୃଷ୍ଟିରେ ଅପ୍ରାକୃତ ପ୍ରେମର ଉତ୍ସ ଓ ହ୍ଲାଦିନୀଶକ୍ତିର ମୂର୍ତ୍ତିମତୀ ସ୍ୱରୂପା । ରାଧା ଏବଂ କୃଷ୍ଣଙ୍କ ବ୍ୟତୀତ ବ୍ରଜାଙ୍ଗନାମାନେ ମଧ୍ୟ ପ୍ରତ୍ୟେକେ ଏହି ଆନନ୍ଦମୟୀ ଶକ୍ତିର ପ୍ରକାଶ ।

(୮) ଗୌଡ଼ୀୟ ବୈଷ୍ଣବଗଣ ମନେ କରନ୍ତି ଯେ, ଶକ୍ତି ଓ ଶକ୍ତିମାନର ଅଭେଦ ହେତୁ ରାଧା ଏବଂ କୃଷ୍ଣ ସ୍ୱରୂପତଃ ଏକ ହେଲେ ହେଁ ଲୀଳାବିଳାସ ନିମିତ୍ତ ସେମାନେ ଦୁଇଟି ମୂର୍ତ୍ତି ଗ୍ରହଣ କରି ଅଛନ୍ତି । ଏଣୁ ଏହି ତତ୍ତ୍ୱ ହେଲା ଗୌଡ଼ୀୟମାନଙ୍କର ଅଚିନ୍ତ୍ୟ ଭେଦାଭେଦତତ୍ତ୍ୱ ।

(୯) ଗୌଡ଼ୀୟ ବୈଷ୍ଣବଧର୍ମ ସାହିତ୍ୟ ଓ ଦର୍ଶନରେ ପ୍ରେମତତ୍ତ୍ୱର ମହିମା ପ୍ରାଧାନ୍ୟ ଲାଭ କରିଛି । ବିଦଗ୍ଧ ଚିନ୍ତାମଣିରେ ଏହି ପ୍ରେମତତ୍ତ୍ୱ ମଧ୍ୟ ଅନବଦ୍ୟଭାବେ ନିରୂପିତ ହୋଇଛି । ଶ୍ରୀ ଚୈତନ୍ୟଚରିତାମୃତରେ 'କୃଷ୍ଣେନ୍ଦ୍ରିୟ ପ୍ରୀତିବାଞ୍ଛା'କୁ ପ୍ରେମ ବୋଲି କୁହାଯାଇଛି । ରାଧା ଏହି ପ୍ରେମଭକ୍ତି ନିମିତ୍ତ ଭକ୍ତଶ୍ରେଷ୍ଠା ହୋଇ ପାରିଛନ୍ତି । ଏହି ପ୍ରେମର ସର୍ବଶ୍ରେଷ୍ଠ ପରିଣତି ହେଉଛି 'ମହାଭାବ' ଏବଂ ଶ୍ରୀରାଧା ହେଉଛନ୍ତି ମହାଭାବର ଅଧିକାରିଣୀ । ଅଭିମନ୍ୟୁ ଅପ୍ରାକୃତ ବୃନ୍ଦାବନ ଧାମରେ 'ଅପ୍ରାକୃତ ପ୍ରେମ-ମୂର୍ତ୍ତି'ର କଳ୍ପନା କରି ବିଦଗ୍ଧ ଚିନ୍ତାମଣିରେ ପ୍ରେମଲୀଳାର ବୈଚିତ୍ର୍ୟ ଯେ ଛନ୍ଦେ ଛନ୍ଦେ ପରିସ୍ଫୁଟିତ କରିଅଛନ୍ତି, ତାହା କହିବା ବାହୁଲ୍ୟ ମାତ୍ର । ଏହି ପ୍ରେମରେ ସାଂସାରିକ 'କାମ'ର ଗନ୍ଧ ହିଁ ନାହିଁ, ଏହା ଶୁଦ୍ଧ ସାତ୍ତ୍ୱିକ ପ୍ରେମ ଓ ତାହା କାମନା ବାସନା ବିବର୍ଜିତ ଅଟେ ।

(୧୦) ଏହି ପ୍ରେମ ପୁଣି ସ୍ୱକୀୟା ଓ ପରକୀୟା ଦ୍ୱିବିଧ ଭାବରେ ଅଭିହିତ । ଶ୍ରୀମଦ୍ ରୂପଗୋସ୍ୱାମୀ ତାଙ୍କର ଉଜ୍ଜ୍ୱଳନୀଳମଣି ଗ୍ରନ୍ଥରେ କୃଷ୍ଣବଲ୍ଲଭମାନଙ୍କୁ ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ଯଥା :—ସ୍ୱକୀୟା ଏବଂ ପରକୀୟା । ସତ୍ୟଭାମା, ରୁକ୍ମିଣୀ, ଜାମ୍ବବତୀ ପ୍ରଭୃତି ଅଷ୍ଟପଞ୍ଚମହିଷୀ ସ୍ୱକୀୟା ନାୟିକା ଓ ରାଧାଙ୍କ ସହିତ ଅନ୍ୟାନ୍ୟ ଗୋପାଙ୍ଗନାବୃନ୍ଦ ପରକୀୟା ନାୟିକା ଭାବରେ କଥିତ । ଏହି ସ୍ୱକୀୟା ଓ ପରକୀୟା ନାୟିକାମାନଙ୍କ ବ୍ୟତୀତ ଅନ୍ୟ ଏକ ପ୍ରକାର ନାୟିକା ଥିଲେ ଓ ସେ ନାୟିକା ହେଉଛନ୍ତି ମଥୁରାର 'କୁବ୍ଜା' । 'କୁବ୍ଜା' ଗୌଡ଼ୀୟ ବୈଷ୍ଣବମାନଙ୍କ ଲେଖାରେ 'ସାଧାରଣୀ' ନାୟିକା ଭାବରେ କଥିତା ।

ଶ୍ରୀକୃଷ୍ଣଙ୍କର ପ୍ରକଟଲୀଳାରେ ଗୋପାଙ୍ଗନାଗଣ ପରକୀୟା ନାୟିକା ଭାବରେ କଥିତ ହୋଇଅଛନ୍ତି । ପରକୀୟା ନାୟିକା : (୧) କନ୍ୟା (୨) ପରୋଢ଼ା ଏହିପରି ଦୁଇ

ଶ୍ରେଣୀରେ ବିଭକ୍ତ । ଯେଉଁ ଗୋପାଙ୍ଗନାମାନେ ଅବିବାହିତା ଓ କୃଷ୍ଣଙ୍କ ପ୍ରତି ଆସକ୍ତ, ସେମାନେ 'କନ୍ୟା' ଓ ଯେଉଁମାନେ ବିବାହିତା ଅଥଚ କୃଷ୍ଣଙ୍କ ପ୍ରତି ଆସକ୍ତ ସେମାନେ ହେଉଛନ୍ତି 'ପରୋଢ଼ା' ।

ଶ୍ରୀଚୈତନ୍ୟଚରିତାମୃତରେ କୁହାଯାଇଛି ଯେ, ଶ୍ରୀକୃଷ୍ଣଚୈତନ୍ୟ ଏହି ପରକୀୟା ତତ୍ତ୍ୱର ପ୍ରଚାର କରିଥିବେ । ସେଥିପାଇଁ କୁହାଯାଇଛି—

"ପରକୀୟା ରସେ ଅତି ଭାବେର ଉଲ୍ଲାସ"—

ସେଥିପାଇଁ ଜନୈକ ଆଲୋଚକ କହିଛନ୍ତି—"ପରକୀୟା ରସରେ ପ୍ରେମର ସମଧିକ ସ୍ଫୁରଣ । ଏଥିନିମିତ୍ତ ପ୍ରେମର ଭିତରେ ଶ୍ରେଷ୍ଠ ଯେ କାନ୍ତାପ୍ରେମ, ତାହାର ଭିତରେ ଶ୍ରେଷ୍ଠ ହେଉଛି ପରକୀୟା ରତି, ରାଧାପ୍ରେମ ହିଁ ଏହି ପରକୀୟା ରତି, ରାଧାପ୍ରେମ ହିଁ ଏହି ପରକୀୟା ରତିର ପର୍ଯ୍ୟବସାନ । ପରକୀୟା ପ୍ରେମ ହେଲା, ନିକଷିତ ପ୍ରେମ, କାରଣ ଏହି ପ୍ରେମ ସର୍ବତ୍ୟାଗୀ ପ୍ରେମ, ସର୍ବସଂସ୍କାରବିମୁକ୍ତ ପ୍ରେମ, ସର୍ବଲଜ୍ଜା-ଭୟ-ବାଧା-ନିର୍ମୁକ୍ତ ପ୍ରେମ, ଏହା କେବଳ ପ୍ରେମର ନିମିତ୍ତ ପ୍ରେମ, ସୁତରାଂ ଏହା ହେଲା ବିଶୁଦ୍ଧ ରାଗାତ୍ମିକା ରତି ।"

ଅଭିମନ୍ୟୁ ମଧ୍ୟ ବିଦଗ୍ଧ ଚିନ୍ତାମଣିରେ କହିଅଛନ୍ତି—

"ଗୋବିନ୍ଦ । ପ୍ରେମସର୍ବକ ବିଧି ଯେଣୁ ,
ପରକୀୟା ରସ ଉଲ୍ଲାସ ବିଶେଷ ହେବାର ଭିଆଇଲେ ତେଣୁ ।"

(ଚି. ୪।୨୯)

ପରକୀୟା ମତର ପ୍ରାଧାନ୍ୟ ତେବେ ଏ ବୈଷ୍ଣବ ସାହିତ୍ୟରେ କାହିଁକି ଏତେ ବେଶି ? ଏହାର କାରଣ ହେଲା, ପରକୀୟା ପ୍ରେମର ବର୍ଣ୍ଣନାରେ ରାଧାପ୍ରେମର ଚରମୋତ୍କର୍ଷ ସଂଘଟିତ ହୋଇଥାଏ । ଗୋଲୋକଲୀଳାରେ ସ୍ୱକୀୟା ହିଁ ପ୍ରଧାନ; କିନ୍ତୁ ପରକୀୟା ମାୟିକ ଏବଂ ଯୋଗମାୟାଙ୍କ ଦ୍ୱାରା ଏହା ବୃନ୍ଦାବନଲୀଳାରେ ବିନ୍ୟସ୍ତ ହୋଇଛି । ସ୍ୱମଧୁର ଲୀଳାର ରସ ଆସ୍ୱାଦନ ନିମିତ୍ତ ହିଁ ଭଗବାନ ମାୟାଦ୍ୱାରା ପରକୀୟାତ୍ୱ ସୃଷ୍ଟି କରିଅଛନ୍ତି ଏବଂ ଏତଦ୍ଦ୍ୱାରା ବୈଷ୍ଣବସାହିତ୍ୟ ବିଶେଷ ରସମୟ ହୋଇପାରିଛି ।

ଗୌଡ଼ୀୟ ବୈଷ୍ଣବଧର୍ମର ମୂଳତତ୍ତ୍ୱ ହେଲା ଯେ ଭକ୍ତ "ଭୁକ୍ତି, ମୁକ୍ତି, ବାଞ୍ଛାଶୂନ୍ୟ" ହୋଇ ଆନୁକୂଲ୍ୟେ ସର୍ବେନ୍ଦ୍ରିୟରେ କୃଷ୍ଣାନୁଶୀଳନ କରି ଅନ୍ୟାନ୍ୟ ପୂଜା, ଧର୍ମ, କର୍ମ, ଜ୍ଞାନର ପଦ୍ଧତି ଅନୁସରଣ କରିବ ନାହିଁ ଏବଂ ତତ୍ପରେ ସେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ପ୍ରଭୃତି ଯେ କୌଣସି ରସକୁ ଆଶ୍ରୟ କରି ଭଜନା କରିବ । ମଧୁର ରସ ଭଜନାରେ ଗୋପୀଭାବ ଓ ରାଧାଭାବ ହେଉଛି

ପ୍ରଧାନ । ଏହି ଭାବରେ ରାଧାପ୍ରେମମୟୀ ଓ କୃଷ୍ଣ ପ୍ରେମମୟ । ପ୍ରେମରେ ଏହି ସାଧନାର ଆରମ୍ଭ ଓ ସମାପ୍ତି ହେଉଛି ସେହି ପ୍ରେମରେ । ଭକ୍ତ ପ୍ରେମ ବ୍ୟତୀତ ଆଉ କିଛି ଚାହେଁ ନାହିଁ—ସୁନ୍ଦରୀ ନାୟିକା, ଭୋଗ, ମୁକ୍ତି, ଐଶ୍ୱର୍ଯ୍ୟ ବା କୌଣସି ବିଭୂତି ଇଚ୍ଛା କରେ ନାହିଁ, କେବଳ ଚାହେଁ ଗୋପୀଭକ୍ତି । କବି ଉପରେ ସେହି ପ୍ରେମମୟ ସ୍ୱରୂପଙ୍କ ନିକଟରେ ଆର୍ତ୍ତି ନିବେଦନ କରିଛନ୍ତି, ତାହା ଲକ୍ଷ୍ୟ କରିବାର କଥା । କବିଙ୍କର ଏହି ମର୍ମସ୍ପର୍ଶୀ ଆତ୍ମନିବେଦନ ସ୍ୱତଃସ୍ଫୂର୍ତ୍ତି ପରି ଜଣା ପଡ଼ିଥାଏ—

"ଐରାବତ ଗଢ ଅଣିମାଦି ଭୋଗ ମୁକ୍ତି
ଐଶ୍ୱର୍ଯ୍ୟାଦିରେ ମୋ ଚିତ୍ତ ନୋହିବ ଆସକ୍ତି । ୧୨ ।
ଊର୍ଦ୍ଧ୍ୱଶାନନ ହେ ମାଗୁଛି ପଦଧରି
ଓ କରିବ ଆଲେ ଦାସୀ ଡାକିଲେ କିଶୋରୀ ।"

ଗୌଡ଼ୀୟ ବୈଷ୍ଣବ ଦର୍ଶନ ଅନୁସାରେ କବିଙ୍କର ଏ ଭକ୍ତି ଦାସ୍ୟଭକ୍ତି । ମହାଭାବମୟୀ ପ୍ରେମମୟୀ ରାଧାଙ୍କ ନିକଟରେ କବି ଦାସୀ ଭାବରେ ନିଜକୁ ପରିଚିତ କରାଇଅଛନ୍ତି ।

କବି ପୁନଶ୍ଚ କହିଛନ୍ତି ଯେ, ଯେଉଁମାନେ ଗୁରୁକୃଷ୍ଣ ଓ ବୈଷ୍ଣବଙ୍କ ପ୍ରତି ଶଠତା ଆଚରଣ କରନ୍ତି ନାହିଁ, ସେମାନେ କେବଳ ଏହି ରାଗମାର୍ଗର ତତ୍ତ୍ୱ ବୁଝିପାରିବେ । ରାଗମାର୍ଗ ହେଉଛି ରାଗାତ୍ମିକା ଭକ୍ତି, ପ୍ରେମଭକ୍ତି ବା ଶୁଦ୍ଧାଭକ୍ତି । ଯେଉଁଥିରେ ନାମ-ଭଜନ ବା ୧୬ ନାମ ବା ୩୨ ଅକ୍ଷର ତତ୍ତ୍ୱ ସାରତତ୍ତ୍ୱ ଭାବରେ ଗୃହୀତ ହୋଇଥାଏ । ଗୌଡ଼ୀୟ ବୈଷ୍ଣବମାନଙ୍କର ମହାମନ୍ତ୍ର ହେଉଛି—

"ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେରାମ ହରେରାମ ରାମ ରାମ ହରେ ହରେ ।"

ଏହି ମହାମନ୍ତ୍ରକୁ ଲକ୍ଷ୍ୟ କରି କବି ଲେଖିଛନ୍ତି—

"ହରେକୃଷ୍ଣ ରାମନାମ ଯହିଁ ସେହି ତତ୍ତ୍ୱ
ହରଷେ ରସିବେ ଯେବେ ସାଧକ ଏ ଗୀତ ।" (୧୪୯)

ଅନ୍ୟତ୍ର କବି ଗୋପୀ ଓ ରାଧାଭାବରେ କିପରି ଅନୁପ୍ରାଣିତ ହୋଇଛନ୍ତି, ତାହା ମଧ୍ୟ ଲକ୍ଷ୍ୟ କରିବାର କଥା । ଯେପରି—

ଦୀନ ଅଭିମନ୍ୟୁ ଜୀବ । ରାଧା ଭାବ ଭାବି ବାହାରିବ ।
ସତେ ଏ ଭାଗ୍ୟ କି ଦେଖାଯିବ । (ଗୁ. ୪୮।୫୮)

× × × ×

"ହା ହା କହି ସାମନ୍ତସିଂହାର ଜୀବ ।
ଯା ଯା ବାହାର ଭାବ ଶ୍ରୀରାଧାଭାବ । (୩୯।୪୫)

× × × ×

ଦୀନ ସାମନ୍ତସିଂହାର ଚରି ଗୋପିକା ମତେ ଭୋଳା । (ଗ୍ରୁ. ୭୯।୩୮)

ବିଦଗ୍ଧ ଚିନ୍ତାମଣିର ୩୯ ଛାନ୍ଦରେ ରାଧା ବିଶାଖା ଉକ୍ତି-ପ୍ରତ୍ୟୁକ୍ତି ମଧ୍ୟରେ କବିହୃଦୟର ଭାବ ରାଧାଙ୍କର ମୁଖରେ ପ୍ରତିଫଳିତ ହୋଇଛି କହିବା ବାହୁଲ୍ୟ ହେବ । ଏ ଭକ୍ତି ସାଧାରଣ କଥା ନୁହେଁ । ଭକ୍ତ କବି ବ୍ୟତୀତ ଏ ପ୍ରକାର ଅଭିବ୍ୟକ୍ତି କାବ୍ୟରେ ସମ୍ଭବ ନୁହେଁ । କବିଙ୍କର କୃଷ୍ଣୈକପ୍ରାଣତା ପଦ ସମୂହରେ କିପରି ରୂପାୟିତ ହୋଇଛି, ତାହା ଏଠାରେ ଲକ୍ଷ୍ୟ କରାଯାଇପାରେ ।

"ପୁଣି କହନ୍ତି ସଜନୀକି ଗୁହି । ଜୀବନ ଯିବାର ସନ୍ଦେହ ନାହିଁ ।
ସଖୀଗଣ ପୁଣି ଏତିକି କର । ଶ୍ୟାମ ପାଦଧୂଳି ବୋଳି ମୋ ଶିର ।
ତାଙ୍କ ଚିତ୍ର ମୂର୍ତ୍ତି । ଦେଖାଇଥାଅ ପାଉ ନେତ୍ର ଗତି । ୩୫ ।

ଜୀବନ ଗଲେ ଏତିକି କରିବ । ଶ୍ୟାମ ନାମ ମୋର ହୃଦେ ଲିହିବ ।
ଶ୍ୟାମରୂପ ମୃତ୍ତିକାରେ ଲଦାଇ । ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ ।
ଶ୍ୟାମ ଗତିପଥେ ମୋ ଶବ ପୋତିବ ଆପଣା ହାତେ । ୩୬ ।

ଯେବେ ଏମନ୍ତ କରି ନ ପାରିବ । ତମାଳେ କୋଳ କରାଇ ଥୋଇବ ।
କୃଷ୍ଣ ବଂଶୀ ଶୁଭୁଥିବ ଯେଣିକି । କର୍ଣ୍ଣ କରିଦେଇଥିବ ତେଣିକି ।
ସବୁ ସଜନୀଙ୍କି । ହାତ ଧରି ମୁଁ ମାଗୁଛି ଏତିକି ।" (ଗ୍ରୁ-୩୯)

ଏହି ପଦଗୁଡ଼ିକ ବିଦଗ୍ଧମାଧବ ଶ୍ଳୋକର ଅନୁରୂପ ହେଲେ ହେଁ କବିଙ୍କର ନିଜସ୍ୱ ଯେ ଏଥିରେ ସଂପ୍ରସାରିତ ହୋଇଛି, କହିବା ଭୁଲ ହେବ ନାହିଁ । ବିଦଗ୍ଧ ମାଧବର କବି ମଧ୍ୟ ଅନୁରୂପ ଭାବରେ ଲେଖିଛନ୍ତି—

ତମାଲସ୍ୟ ସ୍କନ୍ଦେ ବିନିହିତ ଭୁଜା ବଲ୍ଲରିୟମ୍
ଯଥା ବୃନ୍ଦାରଣ୍ୟେ ଚିରମବିଚଲା ତିଷ୍ଠତିତନୁଃ । ୪୬ ।

(ବି. ମା. ୨ୟ ଅଙ୍କ)

କବି ଏହି କାବ୍ୟରେ ଯେଉଁ ଭକ୍ତିଭାବରେ ବର୍ଣ୍ଣନା କରିଛନ୍ତି ଓ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାର ଯେଉଁ ଅଦ୍ୱିତୀୟ ଚିତ୍ର ଚିତ୍ରଣ କରିଅଛନ୍ତି, ସେକଥା ହିଁ କେବଳ ଶୁଦ୍ଧାଭକ୍ତି ମାର୍ଗର ବୈଷ୍ଣବମାନେ ହିଁ ଜାଣିବେ; କିନ୍ତୁ ଅନ୍ୟମାନେ ନୁହନ୍ତି । ଯେପରି ସେ ୯° ଛାନ୍ଦର ଉପସଂହାର ଲେଖିଛନ୍ତି—

"ରାଗାତ୍ମିକା ଅନୁଭବା । ଏ ପ୍ରେମ ଜାଣନ୍ତି ଭାବ ।
ଯେମନ୍ତେ ମତେ ସୁଖଦୁଃଖେ ସିନ୍ଧୁ ବର୍ତ୍ତିଲା ।
ଦୀନ ଅଭିମନ୍ୟୁ ମାନସ । ରାଧାଶ୍ରୀକୃଷ୍ଣ ମାନରସ ଭାଲି ବିରସ ।"
(ଛା. ୯୦।୩୪)

କୃଷ୍ଣଙ୍କର ବିରହରେ ଶୁଦ୍ଧ ସାତ୍ତ୍ୱିକ ଭାବର ବର୍ଣ୍ଣନା ରାଧାଙ୍କଠାରେ ପ୍ରକାଶ ପାଇଛି । ଏହି ଭାବ କବିହୃଦୟର ପ୍ରତିବିମ୍ବ । ଯେପରି—

ସ୍ମରଣ କରେ ହରି ଯାହାକର ରୂପଧ୍ୟାନ ତନ୍ମୟରେ ।
ନାମ କୀର୍ତ୍ତନରେ ମାତି ନର୍ତ୍ତନରେ ପ୍ରେମ ଢଳେ ଥରେ ଥରେ ।
ପଦଚନ୍ଦ୍ରରୁ ଯେ । ଧୂଳି ଯେବେ ହୃଦେ ବୋଳି ।
ପୁଣି କ୍ଷଣେ କ୍ଷଣେ ସେ ଭୂମିଲକ୍ଷଣେ ରହି ପୁଣି ଯାନ୍ତି ଚଳି । (୮୦।୩୬)

କେବଳ ଏତିକି ନୁହେଁ, ରାଧାକୃଷ୍ଣଙ୍କର ଏହି ମଧୁରରସାତ୍ମକ କାବ୍ୟରେ ଅଭିମନ୍ୟୁ କେବଳ କାବ୍ୟରସିକ ଭାବରେ କଳ୍ପନାର ବୈଚିତ୍ର୍ୟ, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ଆଡ଼ମ୍ବରରେ କାବ୍ୟନାୟିକାକୁ ସୁନ୍ଦରୀ କରିନାହାନ୍ତି, କାବ୍ୟର ପଦେ ପଦେ ସେ ଭକ୍ତଭାବରେ ତନ୍ମୟ ହୋଇ ରାଧାକୃଷ୍ଣଙ୍କର ମିଳନ ବିରହରେ ସ୍ୱଭକ୍ତିମନ୍ତ୍ର ଯଥେଷ୍ଟ ଭାବରେ ପ୍ରଦର୍ଶନ କରିଅଛନ୍ତି ।

## ବିଦଗ୍ଧ ଚିନ୍ତାମଣିରେ ପ୍ରେମତତ୍ତ୍ୱର ବିଶ୍ଳେଷଣ—

ବିଦଗ୍ଧ ଚିନ୍ତାମଣିର ନିର୍ଯ୍ୟାସ ହେଲା ପ୍ରେମଭକ୍ତି ବା ଶୁଦ୍ଧାଭକ୍ତି । ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ପ୍ରେମର ପ୍ରାଧାନ୍ୟ ଏତେ ଯେ ସେ ସାହିତ୍ୟକୁ ପ୍ରେମସର୍ବସ୍ୱ ସାହିତ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ କବି ସ୍ପଷ୍ଟଭାବରେ କହିଅଛନ୍ତି—

"ଏମନ୍ତ ମହିମାବନ୍ତ ପ୍ରେମଭକ୍ତିରସେ
ଏକ ନିଷ୍ଠେ ଅଭିମନ୍ୟୁ କବି କରେ ଆଶ ।" (୧।୧୧)

ବିଦଗ୍ଧ ଚିନ୍ତାମଣିର ଶତାଧିକ ସ୍ଥଳରେ ରାଧାପ୍ରେମ ଓ କୃଷ୍ଣପ୍ରେମ ବର୍ଣ୍ଣନାର ସୂଚନା ଦେଇଅଛନ୍ତି । ଏହାର ଉଦାହରଣ ଅସଂଖ୍ୟ । ଯେପରି—

କାମନା କଳପତରୁ ଚିନ୍ତାମଣି ନାମ
କଲ୍ପିଛି କବିବନ୍ଦେ ବର୍ଣ୍ଣିବାକୁ ତବ ପ୍ରେମ । (୧।୧୭)
ଶୁଣି ଗାହକେ ପାଇବେ ଚଞ୍ଚଳ ସୁପ୍ରେମ
ଗୀତ ହେବ ବିଦଗ୍ଧ ଚିନ୍ତାମଣି ନାମ । (୧।୧୯)

ବିଦଗ୍ଧ ଚିନ୍ତାମଣିର ପୃ. ୩୯, ୪୬, ୧୬ ଓ ୧୪ରେ କବି ପ୍ରେମତତ୍ତ୍ୱର ବିଶଦ ବର୍ଣ୍ଣନା କରିଅଛନ୍ତି । ଭାବ, ଭାଷା, ଛନ୍ଦ ତଥା ଭାବଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଏହି ଗ୍ରନ୍ଥଟି ଓଡ଼ିଆ କାବ୍ୟ ସାହିତ୍ୟରେ ଗୋଟିଏ ଉଜ୍ଜ୍ୱଳ ରତ୍ନ । କବି ମଧ୍ୟ ନିଜେ ଏହିସବୁ ଗ୍ରନ୍ଥରେ ଭୂୟସୀ ପ୍ରଶଂସା କରିଅଛନ୍ତି । ଯେପରି—

"ଧୀରଚକ୍ର ହୃଦ-ପଦ୍ମ-ମିହିର । ରସିକ ରସ ରତନ ଭଣ୍ଡାର
ଗ୍ରାହକ ପ୍ରେମ ବାଣିଜ୍ୟ ପସରା । କାମିକାମଦା ଚିନ୍ତାମଣି ପରା
ଏ ଗ୍ରନ୍ଥ ଗାରିମା । ପ୍ରୀତି ଆନନ୍ଦ ସିନ୍ଧୁକୁ ଚନ୍ଦ୍ରମା ।" ୩୯।୧

ରାଧା ବିଶାଖା ଉକ୍ତି ପ୍ରତ୍ୟୁକ୍ତିରେ କବି ପ୍ରେମତତ୍ତ୍ୱର ଅତି ମହତ୍ତ୍ୱପୂର୍ଣ୍ଣ ଚିତ୍ରଣ କରିଅଛନ୍ତି । କବି ପ୍ରେମକୁ ଏକ ସ୍ୱର୍ଗୀୟ "ଅବ୍ୟୟ ଅକ୍ଷୟ ନିତ୍ୟ ପଦାର୍ଥ" ବୋଲି କହିଅଛନ୍ତି । ସମବୁଦ୍ଧି, ସମବୟସ, ସୌନ୍ଦର୍ଯ୍ୟବନ୍ତ ଓ ଉତ୍ତମ ଗୁଣ ସ୍ୱଭାବଯୁକ୍ତ ଏହି ଦୁଇଗୋଟି ପ୍ରଧାନ ବିଭାଗ ଯେଉଁଠାରେ ଥାଏ, ସେଠାରେ ସମ୍ବନ୍ଧ ଜାତ ହେଲେ 'ପ୍ରଣୟ' ଜାତ ହୋଇଥାଏ । ଏଥି ବ୍ୟତୀତ 'ରସ ରୂପକ ରତ୍ନ' ଚିହ୍ନିବାକୁ ଉଭୟଙ୍କର ଗ୍ରହଣ କରିବାର ଶକ୍ତି ଥିବା ପ୍ରୟୋଜନ ।

ପ୍ରେମ ନିକୃଷ୍ଟ ବ୍ୟକ୍ତିଠାରେ ଛାୟା ସଦୃଶ, ମଧ୍ୟମଠାରେ ପ୍ରତିବିମ୍ବ ଓ ଉତ୍ତମ ବ୍ୟକ୍ତି ହୃଦୟରେ ଅକ୍ଷୟ ଅକ୍ଷୁର୍ଣ୍ଣ ନିଷ୍କଳଙ୍କ ଚନ୍ଦ୍ରତୁଲ୍ୟ ପ୍ରକାଶ ଲଭି କରିଥାଏ । ପ୍ରେମ ବା ପ୍ରଣୟ ଯୌବନାବସ୍ଥାରେ କାମର ସଂଯୋଗ ହେତୁ ହୃଦୟରେ ରସର ସଞ୍ଚାର କରାଇଥାଏ ଓ ତାହା ହାବ ଭାବ, ପରିହାସ, ନାନା କ୍ରୀଡ଼ାକୌତୁକ, ଭଙ୍ଗୀ, ଚାତୁର୍ଯ୍ୟ ପ୍ରଭୃତି ଦ୍ୱାରା ପରିପୁଷ୍ଟ ହୋଇ ସୁଖ ଏବଂ ଆନନ୍ଦ ସୃଷ୍ଟି କରିଥାଏ । କବି ଏହି ପ୍ରେମକୁ 'ମାଦକ' ସହିତ ଅଧିକାଂଶ ସ୍ଥଳରେ କହିଅଛନ୍ତି—ଏ ମାଦକ ଅତି ଦୁର୍ଜୟ ଓ ତାହାର ନିଶା ଜୀବନ ଥିବା ପର୍ଯ୍ୟନ୍ତ ବ୍ୟକ୍ତିକୁ ବଶୀଭୂତ କରିଥାଏ ।

ପୃଥିବୀରେ ଯେ କୌଣସି ବ୍ୟକ୍ତିର ଦେହ, ମନଦ୍ୱାରା ଓ ମନ ଇନ୍ଦ୍ରିୟ ଦ୍ୱାରା ଏବଂ ଇନ୍ଦ୍ରିୟ ପ୍ରକୃତିଦ୍ୱାରା ଆୟତ୍ତ ହୋଇଥାଏ । ମନୁଷ୍ୟର ପ୍ରକୃତି ସ୍ୱାଭାବିକ ଭାବରେ 'ମଦନ' ବା 'କାମ'ର ଅଧୀନ ଅଟେ । ପ୍ରେମ ବା ପ୍ରୀତିରୁ 'ସୁରତି' ଓ ସୁରତିରୁ 'ମଦନ' ବା 'କାମ'ର ଜନ୍ମ । ପ୍ରେମର ଉଦୟ ନିମିତ୍ତ ବିଭିନ୍ନ ଉଦ୍ଦୀପନ ଓ ଆଲମ୍ବନ ବିଭାବ ମଧ୍ୟ କାର୍ଯ୍ୟ କରି କାମର ସ୍ଫୂର୍ତ୍ତିସାଧନ କରିଥାଏ ।

ପ୍ରେମର ଅନ୍ୟାନ୍ୟ ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ କବି ପୁଣି କହିଛନ୍ତି ଯେ, ସୁଖରୁ ଆନନ୍ଦ ଓ ଆନନ୍ଦରୁ 'ମୋହନ' ରୂପକ ସମୁଦ୍ରର ଜନ୍ମ ଘଟେ । କବି ସୁନ୍ଦର ରୂପକ-ଅଳଙ୍କାର ସୃଷ୍ଟି କରି କହିଛନ୍ତି ଯେ, ଏହି ମୋହନ ସମୁଦ୍ରର ଲହରୀ ହେଲା 'ମାଦକ', ମାଦକ ଲହରୀରୁ 'ଆହ୍ଲାଦ' ରୂପକ ଅମୃତ ଉତ୍ପତ୍ତି ଓ ତହିଁରୁ

'ମୋହନ' ରୂପକ ରତ୍ନର ଜନ୍ମ । ଯେଉଁ ବ୍ୟକ୍ତି ଏହି ମୋହନ ରତ୍ନ ଲାଭ କରେ, ତାହା ନିକଟରେ ବିଶାଳ ସମ୍ପଦ ନିରର୍ଥକ ତୁଚ୍ଛ ପ୍ରତୀତ ହୋଇଥାଏ ।

ସଂଯୋଗରେ ପ୍ରେମ ଦ୍ୱିଗୁଣିତ ହୋଇଥାଏ ଏବଂ ବିରହରେ ପ୍ରେମିକ ଦୁଃଖଲାଭ କରିଥାଏ । ଅନୁଭବୀ ବ୍ୟତୀତ ସଂଯୋଗ ଓ ବିଯୋଗ ବା ମିଳନ ବିରହଜନିତ ଦୁଃଖସୁଖ ଉପଲବ୍ଧି କରିବା ବୃଥା । ପ୍ରେମର ମାଦକତାରେ ପର ଆପଣା, ବିଧି-ଅବିଧି, ଜ୍ଞାନ-ଅଜ୍ଞାନର ବିଚାର ରୁହେ ନା । ପ୍ରେମିକ ଭାବବିହ୍ୱଳ ହୋଇ ପ୍ରେମଲାଭ ନିମିତ୍ତ ମାନସମ୍ମାନକୁ ବିକାଦିଏ, ନିନ୍ଦାକୁ ଅତି ଆନନ୍ଦର ସହିତ ବରଣ କରିନିଏ ଓ କଳଙ୍କର ମାଳାକୁ ଗଳାର ଭୂଷଣ କରିଥାଏ ।

ଆମେ 'କାମ'କୁ ଯେଉଁ ଅର୍ଥରେ ଗ୍ରହଣ କରିଥାଉ, କବି ତାହାକୁ ସେ ଅର୍ଥରେ ଗ୍ରହଣ କରିନାହାନ୍ତି । କବି କହିଛନ୍ତି, 'ଅପ୍ରାକୃତ ପ୍ରେମ' ହିଁ 'କାମ' ଭାବରେ ନାମିତ । ଯେପରି—

> ଅପ୍ରାକୃତ ପ୍ରେମ ଯା ନାମ କାମ । ଆତ୍ମତ୍ୱ ରହେ କି ସେ ହେଲେ ବାମ ।
> ପରବେଶ ହୋଏ ଯାହାର ଜୀବ । ତାର କି ରହେ କୁଳର୍ଦ୍ଧିସ୍ୱ ଭାବ
> ମନେ ଘେନ ଧୀର । ପ୍ରୀତି ଯେ କଲ ସେ ଗଲଟି ମାର ।" (୩୨।୧୭)

ପ୍ରେମ-ମାଦକର ଲକ୍ଷଣ କବି ଅତି ସୁନ୍ଦର ଭାବରେ ପରବର୍ତ୍ତୀ ପଦମାନଙ୍କରେ ବର୍ଣ୍ଣନା କରିଅଛନ୍ତି । ଯେପରି—

> ଅନଳ ନୁହଇ ଦେହ ଦହଇ । ଅସ୍ତ୍ର ନୁହଇ ମରମେ ଭେଦଇ ।
> ନୁହଇ ତ ଜଳ ବୁଡ଼ାଇ କୂଳ । ନୁହଇ ମାଦକ କରେ ବିହ୍ୱଳ
> ନୁହଇ ବଡ଼ଶୀ । ବଳେ ମନମୀନ ନିଏ ଆକର୍ଷି । (୩୨।୧୮)

ପ୍ରେମର ପଥ କିପରି ଦୁରୂହ, ସେ ବିଷୟରେ କବି ସୁନ୍ଦର ଭାବରେ ତାହାର ବର୍ଣ୍ଣନା ଦେଇଅଛନ୍ତି, ଯେପରି—

> ବଡ଼ କଠିଣ ସେ ପ୍ରୀତି ପାଳିବା । ତୀକ୍ଷ୍ଣ ଅସିଧାରେ ପଥ ଚାଲିବା ।
> ଶୂନ୍ୟ ଆରୋହଣଠାରୁ କଠିନ । ପବନ ଫାନ୍ଦେ ଧରିବା ଲକ୍ଷଣ ।
> ପ୍ରୀତିରକ୍ଷାଠାରେ । ଯଥା ପାରଦ ରଖିବା ମୁଠାରେ ।୨୦।
> ଲଖ ଘୋଡ଼ା ନବନୀତ ସୁଆର । ପ୍ରଚଣ୍ଡାନଳେ ପଥ ଚାଲିବାର ।
> ତହିଁ କି କର ରହିବ ଶରୀର । ତହୁଁ ଅଧିକ ପ୍ରୀତି ପାଳିବାର ।
> କହୁଛି ଏତିକି । ଦୂରୁଁ ଜୁହାର ପୀରତି ଖାତି କି ।୨୧।

ତା'ପରେ କବି ସୁନ୍ଦର ଉପମା ଅଳଙ୍କାର ଦେଇ କହିଅଛନ୍ତି ଯେ, ପ୍ରୀତି ହେଉଛି ବାରୁଦ ଅନଳ ଓ ଥରେ ସଂଯୋଗ ହେଲେ ଅର୍ଥାତ୍ ତହିଁରେ

ଥରେ ମାତ୍ର ପ୍ରେମ ରୂପକ ଅନଳ ସଂଯୁକ୍ତ ହେଲେ ସେ ବାରୁଦ ନ ସରିବା ପର୍ଯ୍ୟନ୍ତ ଅନଳ ବା ବାରୁଦ କେହି ନିବୃତ୍ତ ହୁଅନ୍ତି ନାହିଁ । ସେ ପ୍ରେମର ଏହି ସାଧାରଣ ବୈଶିଷ୍ଟ୍ୟଗୁଡ଼ିକ ଦେଇ ଲେଖିଛନ୍ତି—

ବାରୁଦ ଅନଳ ପ୍ରାୟେ ପୀରତି । ସଂଯୋଗ ବାରଣ କରି ନୁହନ୍ତି ।
ଦୁହେଁ ନିର୍ବିଶେଷ ହେଲେ ସରଇ । ଉଭୟ ପ୍ରୀତିଆ ତେମନ୍ତ ହୋଇ ।
ଜୀବ ଥିବା ଯାକେ । ବାରଣ ପ୍ରୀତି କରିପାରିବ କେ । ୨୪ ।
ଯେଣେ ଗୃହିଁଲେ ତେଣେ ସେହି ଦିଶେ । ଚକ୍ଷୁ ବୁଜିଲେ ହୃଦରେ ପ୍ରକାଶେ ।
ନିଦ୍ରା ଅଇଲେ ସ୍ୱପନେ ଦିଶଇ । ଜାଗ୍ରତେ ଥିଲେ ଜ୍ଞାନ ହିଁ ନ ଥାଇ ।
କାୟ ମନୋବାକ୍ୟେ । ନା ବିନା ଯାର ନ ଗଣେ କିଲେକେ ।

ତା' ପରେ ସେ ପୁଣି କହିଛନ୍ତି, 'ବିହାଇବ ଯେ ସ୍ୱାବରେ ଗ୍ରୀତକ । ମତି ବଳାଇବ ସେହି ପ୍ରୀତକ ।' ଅର୍ଥାତ୍ ପ୍ରେମ କରିବାକୁ ହେଲେ ବହୁ ବାଧାବିଘ୍ନ ସହିବାକୁ ପଡ଼ିବ; କାରଣ ପ୍ରେମପଥ କଣ୍ଟାକାକୀର୍ଣ୍ଣ ଅଟେ ।

( ୧ )

କବି ବିଦଗ୍ଧ ଚିନ୍ତାମଣିର ୪୨ ଛାନ୍ଦରେ ପୁନର୍ବାର ପ୍ରେମର ସ୍ୱରୂପ ବର୍ଣ୍ଣନା କରି ଗ୍ଲଲିଛନ୍ତି । କୃଷ୍ଣ ସଖୀମାନଙ୍କୁ ପ୍ରେମ କ'ଣ ଏ ବିଷୟ ପଗ୍ଲରିବାରେ ସଖୀମାନେ ପ୍ରେମର ଲକ୍ଷଣ ବୁଝାଉଛନ୍ତି ।

✳ ଭଗବାନଙ୍କର ତିନି ପ୍ରଧାନ ଶକ୍ତି ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ ପ୍ରେମ ସହିତ ମଧ୍ୟ ସମ୍ପୃକ୍ତ । ସନ୍ଧିନୀଶକ୍ତି ଅର୍ଥାତ୍ ସତ୍ତାମୟୀ ଶକ୍ତି, ସମ୍ବିତ୍ ବା ଜ୍ଞାନମୟୀ (ସମ୍ବିଦିନୀ) ଓ ଆହ୍ଲାଦିନୀ ଅର୍ଥାତ୍ ଆନନ୍ଦମୟୀ ଶକ୍ତି ସମସ୍ତ ଶକ୍ତିର ମୂଳ ଉତ୍ସ । ଏହି ଶକ୍ତି ପ୍ରକ୍ରିୟାରେ ସମସ୍ତ ଜଗତ ଆତଯାତ ହେଉଅଛି ।

ଆହ୍ଲାଦିନୀ ଶକ୍ତି ଏକ ପ୍ରେମମୟୀ ଶକ୍ତି, ତାହାର ବ୍ୟାପ୍ତି ସର୍ବତ୍ର ରହିଛି । ପ୍ରୀତି ଓ ରତି ଉଭୟେ ଅଙ୍ଗାଙ୍ଗୀ ଭାବେ ସମ୍ପୃକ୍ତ । କବିଙ୍କର ବିଚାରରେ—

"ରତିସଙ୍ଗ ପ୍ରୀତି ନ ଥିଲେ ନ ଶୋଭଇ ରତି"—(୪୨।୯)

ରତି ବ୍ୟତିରେକେ ପ୍ରୀତି ନୀରସ ହୋଇଥାଏ ଏବଂ ଏହି ରତିପ୍ରୀତି ନାରୀ ପୁରୁଷର ମିଳନରେ ସଂଘଟିତ ହୋଇଥାଏ । ପ୍ରୀତି ସ୍ୱକୀୟା ଓ ପରକୀୟା ଭେଦରେ

---

✳ ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ ତ୍ୱୟ୍ୟେକା ସର୍ବ ସଂସ୍ଥିତୌ
ହ୍ଲାଦ ତାପକରୀ ମିଶ୍ରା ତ୍ୱୟି ନୋ ଗୁଣ ବର୍ଜିତେ ।

ବିଷ୍ଣୁ ପୁରାଣ ୧।୧୨।୬୮

ଦୁଇଭାଗରେ ବିଭକ୍ତ । ଅନ୍ୟ କେତେକ ଅନ୍ୟ ଏକ ବିଭାଗ କରିଥାନ୍ତି, ତାହା ହେଉଛି ସାଧାରଣୀ । କବି ଗୌଡ଼ୀୟ ବୈଷ୍ଣବତତ୍ତ୍ୱ ଅନୁଯାୟୀ 'ପରକୀୟା' ପ୍ରୀତିକି ଶ୍ରେଷ୍ଠ ବୋଲି ବିବେଚିତ କରିଅଛନ୍ତି । ଯେପରି—

ବିଷୟ ସମ୍ବନ୍ଧ ପୀରତି ଖ୍ୟାତି । ସ୍ୱକୀୟ ସମ ଯମ ସେ ବୋଲନ୍ତି ।
ଏଣୁ ସେ ଉଣା ପରକୀୟା ସାର । ସେ ପୁଣି ହୁଅଇ ବେନିପ୍ରକାର ।
ପ୍ରୟୋଜନାର୍ଥିନୀ । ସାଧାରଣୀ ରତି ତାହାକୁ ଚହ୍ନି ।୧୨।

ପରକୀୟା ପୁନଶ୍ଚ ଦୁଇ ଭାଗରେ ବିଭକ୍ତ । ଯଥା—ପ୍ରୟୋଜନାର୍ଥିନୀ ଓ ସାଧାରଣୀ । ରତି ତିନି ଭାଗରେ ବିଭକ୍ତ, ଯଥା :—(୧) ସାଧାରଣୀ (୨) ସମଞ୍ଜସା ଓ (୩) ସମର୍ଥା ।

ଆଗରୁ କୁହାଯାଇଛି ଯେ, (୧) ଯେଉଁ ରତିରେ ସବିଶେଷ ଭାବରେ ସମ୍ଭୋଗ ଇଚ୍ଛା ରହିଛି, ତାହା ସାଧାରଣୀ ରତି । (୨) ଯେଉଁ ରତି ଗୁଣାଦି ଶ୍ରବଣଦ୍ୱାରା ଉତ୍ପନ୍ନ ହୁଏ, ତାହା ସମଞ୍ଜସା ନାମରେ ଅଭିହିତ । ଏଥିରେ ପତ୍ନୀ ଭାବରେ ଅଭିମାନ ତଥା ସମ୍ଭୋଗତୃଷ୍ଣା ମଧ୍ୟ ବେଳେବେଳେ ରହିଥାଏ । (୩) ଯେଉଁ ରତିରେ ଆତ୍ମସୁଖସ୍ପୃହା ଓ ଯାହା ଅନିର୍ବଚନୀୟ, ତାହା ସମର୍ଥା ରତି ଭାବରେ ବିଦିତ । ବ୍ରଜପୁରର ବ୍ରଜାଙ୍ଗନାମାନେ ହେଉଛନ୍ତି ଏହି ସମର୍ଥା ରତିର ଅଧୀନା ।

'ଅପ୍ରାକୃତ ପ୍ରେମ ତା ନାମ କାମ' ବା "ଅପ୍ରାକୃତ ପ୍ରେମ ଜନିତ ତହିଁ କାମ ନାମ ତାର । ତେଣୁ କହାଏ ସୁରତି ବିକାର" ପ୍ରଭୃତି ପଦରେ କବି ପୂର୍ବାଚାର୍ଯ୍ୟଙ୍କ ପଦାଙ୍କ ଅନୁସରଣ କରି ଲେଖିଛନ୍ତି ଯେ, ଅପ୍ରାକୃତ ବା ସ୍ୱର୍ଗୀୟ ପ୍ରେମ ହିଁ କାମ ନାମରେ ଅଭିହିତ ।

ବିଦଗ୍ଧ ଚିନ୍ତାମଣିର ୯୨ ଛାନ୍ଦରେ ବିଭିନ୍ନ ନାୟିକାର ଲକ୍ଷଣ ବୃନ୍ଦାଙ୍କର ମୁଖରେ କଥିତ ହୋଇଅଛି । ପ୍ରେମ ଓ ରତି ସମ୍ବନ୍ଧୀୟ ବିଭିନ୍ନ ଆଲମ୍ବନ, ଉଦ୍ଦୀପନ ବିଭାବର ବର୍ଣ୍ଣନା ସହିତ ସମ୍ଭୋଗଶୃଙ୍ଗାରର ବିଭିନ୍ନ ବିଷୟର ଅବତାରଣା କରିଅଛନ୍ତି । ୯୪ ଛାନ୍ଦରେ କବି ବର୍ଣ୍ଣନା କରିଛନ୍ତି ଯେ, ଦୁର୍ବାସାଋଷି ଦିନେ ଗୋପରେ ପ୍ରେମତତ୍ତ୍ୱ ସୂଚକ ଗ୍ରନ୍ଥ ନେଇ ପହଞ୍ଚିଲେ ଓ ସେଠାରେ ସମସ୍ତ ବ୍ରଜବାସୀ ଓ ବ୍ରଜବାସିନୀ ଗୋପାଙ୍ଗନାଙ୍କୁ ପ୍ରେମ ଉପଦେଶ ପ୍ରଦାନ କରିଅଛନ୍ତି ।

ଏହି ଛାନ୍ଦରେ ସେ ବିଭିନ୍ନ ପ୍ରକାର ପ୍ରୀତିର ପର୍ଯ୍ୟାୟରେ (୧) ଏକାଙ୍ଗୀ ପ୍ରୀତି (ଐକାନ୍ତିକୀ ପ୍ରୀତି) (୨) ଶଠପ୍ରୀତି (୩) କ୍ଷଣମନା ମଧ୍ୟରେ ପ୍ରଭେଦ ଦର୍ଶାଇ ତନ୍ମଧ୍ୟରେ ଏକାଙ୍ଗୀ ପ୍ରୀତିକୁ ପ୍ରଧାନ ସ୍ଥାନ ଦେଇଅଛନ୍ତି । 'ଛଳଲୋକ ପ୍ରୀତି' ବା 'ମିଥ୍ୟା ପ୍ରୀତି'କୁ ସର୍ବଦା ସେ ନୀଚ ସ୍ଥାନ ଦେଇ ନିନ୍ଦା କରିଅଛନ୍ତି । କବି

ପରେ ବର୍ଣ୍ଣନା କରିଥିବା 'କ୍ଷୀରନୀର ପ୍ରୀତି' ଓ ବେଦକଥିତ 'ଯୁଗଳାଙ୍ଗୀ' ପ୍ରୀତି 'ଏକାଙ୍ଗୀ' ପ୍ରୀତିର ଅନୁରୂପ ମନେ ହୋଇଥାଏ ।

କବି ଏହି ଗ୍ରନ୍ଥରେ ପରକୀୟା ପ୍ରୀତିକୁ ମଧ୍ୟ ପ୍ରାଧାନ୍ୟ ଦେଇଅଛନ୍ତି ଓ ତାହା ହିଁ ଅପ୍ରୟୋଜନ ପ୍ରୀତି । ଯେପରି—

କୁଳ ବୁଡ଼ାଇ ଅଭିସାର କରେ । ଘନ ରସାଗମେ କାନ୍ତ ଆଶାରେ ।
ଅଭେଦାଲିଙ୍ଗନ ସ୍ୱଭାବ ତେଜେ । ପ୍ରିୟ ଗୁଣକୁ ଐକ୍ୟକରି ଭଜେ,
ନଦୀସିନ୍ଧୁ ପରି । ଧୀରତରେ ଧନ୍ୟ ସେହି ନାଗରୀ ।" (୧।୩।୩୮)

'ଲଙ୍ଗଳୀ', 'ରସାଳ ଓ ଦ୍ରାକ୍ଷ' ତୁଲ୍ୟ ପ୍ରେମର ପ୍ରକାଶ ବିଭିନ୍ନ ପ୍ରକାର ଘଟିଥାଏ, କେଉଁଠି ବାହ୍ୟ ସୁନ୍ଦର, ଅନ୍ତର କର୍କଶ, କେଉଁଠି ବାହ୍ୟ ଅନ୍ତର ଉଭୟ ଗୁଣଯୁକ୍ତ ଓ କେଉଁଠି ବା ବାହ୍ୟରେ ଦୃଢ଼ ଆବରଣ ଓ ଅନ୍ତରରେ ମଧୁରରସ ପ୍ରେମିକା ଭରିରଖିଥାଏ । କବି କୁସୁମ, ନୀଳୀ ଓ ମଞ୍ଜିଷ୍ଠା (ମଞ୍ଜୁଆତି) ଅନୁରାଗ ଭେଦରେ ପ୍ରେମର ବିଭାଗ ଉତ୍ତମ, ମଧ୍ୟମ ଓ ଅଧମ ବିଭାଗ କରିଅଛନ୍ତି ।

ପ୍ରୟୋଜନ ପ୍ରୀତି ଓ ଅପ୍ରୟୋଜନ ପ୍ରୀତିର ବିଭିନ୍ନ ବୈଶିଷ୍ଟ୍ୟ ଦେଖାଇ ସେ ଅପ୍ରୟୋଜନ ପ୍ରୀତି ବା ନିଃସ୍ୱାର୍ଥପର ପ୍ରୀତିର ମହତ୍ତ୍ୱ ପ୍ରତିପାଦନ କରିଅଛନ୍ତି ।

ପ୍ରେମ ଏକ; କିନ୍ତୁ ବିଭିନ୍ନ ପାତ୍ର ଓ ବିଭିନ୍ନ ବର୍ଣ୍ଣରେ ତାହା ଭିନ୍ନ ରୂପ ଏବଂ ନାମ ନେଇଥାଏ । କବି ଏହି ବିଷୟକୁ ଲକ୍ଷ୍ୟକରି କହିଛନ୍ତି—

"ଧୂଳି ପିତୁଳୀ କେଳି ସଙ୍ଗ ରୀତି । ବିବାହ ସମ୍ବନ୍ଧେ ଭିନ୍ନ ପୀରତି ।
ସୁନାଭୂଷଣ ଗଢ଼ାଇଲେ ଭଙ୍ଗି । ନାମ ଭିନ୍ନ ସେ ସ୍ଥାନାନ୍ତର ଲଗି ।
ସେହି ଦ୍ରବ୍ୟ ସେହି । କର୍ମ ଭିନ୍ନରେ ନାମ ଭିନ୍ନ ବହି ।" ୧।୩।୫୧

ପ୍ରୀତି ସମ୍ବନ୍ଧରେ କବିଙ୍କର ଅନ୍ୟାନ୍ୟ କେତେକ ସ୍ମରଣୀୟ ପଦ ରହିଛି । ଯେପରି—

କାଷ୍ଠ କାହିଁ ଶାଳଗ୍ରାମ ଯେମନ୍ତ । ଶଠ ପୀରତି ଘଟଣା ତେମନ୍ତ ।
ଦେଖାଦେଖି ପ୍ରୀତି । ଜଳକୃତ ରେଖା ପ୍ରାୟେ ଅସ୍ଥିତି । (୧।୩।୭)

× × × ×

କ୍ଷଣମନା ପ୍ରୀତି ରଚନା ଭାବ । ଯେଉଁ ରସ ଯେତେବେଳେ ପାଇବ ।
କେତେବେଳଯାଏ ସେ ଭାବ ଥାଏ । କ୍ଷଣକେ ପୁଣି ଅନ୍ତରକୁ ପାଏ ।
ଦେହି କଣ୍ଠୁ ହରି । କରି ବୋଲାଇବ କା ଉପକାରୀ । (୧।୩।୯)

× × × ×

ଉଚ୍ଚ ନୀଚ ପ୍ରୀତି । ସିତ କୃଷ୍ଣ ପକ୍ଷ ଚନ୍ଦ୍ରମା ରୀତି । (୧।୩।୫୦)

×　　×　　×　　×

ପ୍ରେମ ବଳେ ପ୍ରେମୀ ସଦା ଆୟତ୍ତ । ମାଦକୀ ଯେମନ୍ତ ମାଦକେ ମତ୍ତ ।
ପ୍ରେତାବେଶୀ ପ୍ରେତର କରେ । ପ୍ରେମୀ କର୍ମ କରେ ପ୍ରେମାଧୀନରେ ।
ନିନ୍ଦାସ୍ତୁତି ଦୁଇ । ସୁସାଧୁ ସମାନେ ସମ ମଣଇ । (୧୪।୫୧)

×　　×　　×　　×

ପରାପର ଭାବ ପ୍ରୀତିରେ ନାହିଁ । ସମ୍ବନ୍ଧାସମ୍ବନ୍ଧ ରଖିବ କାହିଁ । (୧୪।୫୩)

×　　×　　×　　×

ଅକୈତବ ପ୍ରୀତି କର୍ପୂରବତ । ଜଳିଗଲେ ହେଁ ଗନ୍ଧ ନ ଛାଡ଼େ ତ ।
କଇତବୀ ଦୁର୍ଗୁଣକୁ ନ ତେଜେ । ପଲଣ୍ଡୁ ପରି ସୌରଭ ନ ଭଜେ ।
(୧୯।୫୮)

×　　×　　×　　×

ବାରୁଦ ଅନଳ ସଯୋଗ ପରି । ପ୍ରୀତି କଲେ ହେଁ ପଡ଼େ ପରମାଦ ।
(୧୪।୬୦) ଇତ୍ୟାଦି

ମୋଟ ଉପରେ ଦେଖିବାକୁ ଗଲେ ପ୍ରେମତତ୍ତ୍ୱ ସମ୍ବନ୍ଧୀୟ ଅଭିମନ୍ୟୁଙ୍କର ବୈଜ୍ଞାନିକ ବିଶ୍ଳେଷଣ ଓଡ଼ିଆ ସାହିତ୍ୟରେ ଅଭିନବ—ପ୍ରେମତତ୍ତ୍ୱ ସମ୍ବନ୍ଧୀୟ ତାଙ୍କର ଜ୍ଞାନ ଯେପରି ଗଭୀର, ବିସ୍ତୃତ, ସେହିପରି ମନୋଜ୍ଞ ଓ ଶିକ୍ଷାପ୍ରଦ ଅଟେ । ପ୍ରେମତତ୍ତ୍ୱ ସମ୍ବନ୍ଧୀୟ ବିଶ୍ଳେଷଣ କିପରି ଗୌଡ଼ୀୟ ବୈଷ୍ଣବ ଶାସ୍ତ୍ରାନୁମୋଦିତ, ତାହା ପରବର୍ତ୍ତୀ ଆଲୋଚନାରୁ ଜଣାପଡ଼ିବ ।

## ଗୌଡ଼ୀୟ ବୈଷ୍ଣବ ଶାସ୍ତ୍ରରେ ପ୍ରେମତତ୍ତ୍ୱର ସ୍ୱରୂପ—

ପ୍ରାଚୀନ ସହଜିଆ ସାହିତ୍ୟ ଓ ଗୌଡ଼ୀୟ ବୈଷ୍ଣବସାହିତ୍ୟରେ ପ୍ରେମତତ୍ତ୍ୱ ପ୍ରାଧାନ୍ୟ ଲାଭ କରିଥିବାର ଜଣାଯାଇଥାଏ । ସହଜିଆ ସାଧକମାନେ ପ୍ରୀତି ବା ପ୍ରେମମାର୍ଗ ଅନୁସରଣ କରି ଆତ୍ମତତ୍ତ୍ୱ ଉପଲବ୍ଧି କରିବାର ପ୍ରୟାସ କରିଥାନ୍ତି । ଏହିପ୍ରକାର ସାଧନା ସହଜ ସାଧନାର ପ୍ରଧାନ ବୈଶିଷ୍ଟ୍ୟ । ସେମାନେ ସ୍ୱକୀୟା ଶବ୍ଦର ଅର୍ଥ ସକାମ ସାଧନା ଓ ପରକୀୟା ଶବ୍ଦର ଅର୍ଥ ନିଷ୍କାମ ସାଧନା ବୋଲି ନିର୍ଦ୍ଦେଶ କରିଥାନ୍ତି (ସହଜିଆ ସାହିତ୍ୟ—ମଣୀନ୍ଦ୍ର ମୋହନ ବସୁ, ମୁଖବନ୍ଧ, ପୃ. ୪ ଦ୍ରଷ୍ଟବ୍ୟ)

ବଙ୍ଗୀୟ କବି ଚଣ୍ଡୀଦାସ, ମୈଥିଳୀ କବି ବିଦ୍ୟାପତି ଓ ଚୈତନ୍ୟ ପରବର୍ତ୍ତୀ ଶତାଧିକ ଗୌଡ଼ୀୟ ବୈଷ୍ଣବକବିଙ୍କର ଲେଖନୀରେ ରାଧାକୃଷ୍ଣଙ୍କର ପ୍ରେମର ବୈଚିତ୍ର୍ୟ ଓ ସାଧନରେ ପ୍ରେମର ମହତ୍ତ୍ୱ ଯେପରି ନିର୍ଦ୍ଦିଷ୍ଟ ହୋଇଛି, ତାହାର

ଅନୁରୂପ ଚରଣ ବଦଗ୍ଧ ଚନ୍ତାମଣିରେ ଦେଖାଯାଇଥାଏ । ଯେପରି ଚଣ୍ଡୀଦାସଙ୍କର ପଦାବଳୀରେ—

"ଏମନ ପିରୀତି କଭୁ ଦେଖିନାଇଁ ଶୁନି
ପରାଣେ ପରାଣ ବାଁଧା ଆପନା ଆପନି ।
ଜଲ ବିନୁ ମୀନ ଜନୁ କବହୁଁ ନା ଜୀୟେ
ମାନୁଷେ ଏମନ ପ୍ରେମ କୋଥା ନ ଶୁନିୟେ ।"

× × × ×

ପୁନଶ୍ଚ :— ପିରୀତି ବଲିୟା ଏ ତିନ ଆଖର
ଏ ତିନ ଭୁବନ ସାର
ଏଇ ମୋର ମନେ ହୟ ରାତି ଦିନେ
ଇହା ବଇ ନାହିଁ ଆର ।
ଏ ହେନ ପିରୀତି ନା ଜାନି କି ରୀତି
ପରଶିମେ କିବା ହୟ
ପିରୀତି ବନ୍ଧନ ବଡ଼ଇ ବିଷମ
ଦ୍ୱିଜ ଚଣ୍ଡୀଦାସେ କୟ ।

× × × ×

ପିରୀତି ପିରୀତି କୀରିତି ମୁରତି
ହୃଦୟେ ଲାଗଲେ ସେ
ପରାଣ ଛାଡ଼ିଲେ ପିରୀତି ନ ଛାଡ଼େ
ପିରୀତି ଗଢ଼ିଲ କେ ।
ପିରୀତି ପିରୀତି ପିରୀତି ଅନଲ
ଦ୍ୱିଗୁଣେ ଜ୍ୱଲିୟା ଗେଲ
ବିଷମ-ଅନଲ ନାହିଁ ନିବାଇଲ
ହୃଦୟେ ରହିଲ ଶେଲ ।

ମୈଥିଳୀ କବି ବିଦ୍ୟାପତିଙ୍କର ଲେଖାରେ ମଧ୍ୟ ସେହିପରି ପ୍ରେମର ଚରଣ ପରିଲକ୍ଷିତ ହୋଇଥାଏ । ଯଥା :—

"ସୁପୁରୁଷ ପ୍ରେମ କବହୁ ନାହି ଛାଡ଼
ଦିନେ ଦିନେ ଚନ୍ଦ୍ରକଳା ସମ ବାଢ଼ ।
ତହୁଁ ଯଦ କହସି କରଏ ଅନୁସଙ୍ଗ
ଚୌର ପିରୀତି ହଏ ଲାଖ ଗୁନ ରଙ୍ଗ ।"

ଅନ୍ୟାନ୍ୟ ବୈଷ୍ଣବ କବିମାନଙ୍କର ରଚନାରେ ପ୍ରେମର ଲକ୍ଷଣ :—

କି ହେରଲୁ ଆଗୋ ସଇ ବିଦଗ୍ଧ ରାଜ
ଭକତି କଲପତରୁ ନବଦ୍ୱୀପ ମାଝ ।
ପିରୀତିର ଶାଖା ସବ ଅନୁରାଗ ପାତେ
କୁସୁମ ଆରତି ତାହେ ଜଗତ ମୋହିତେ ।
ନିରମଲ ପ୍ରେମଫଲ ଫଲେ ସବକାଲ
ଏକ ଫଲେ ବିବିରସ ଝରଯେ ଅପାର ।

(ବାସୁଦେବ ଘୋଷ)

ଅନ୍ୟ ଏକ ଗୌଡ଼ୀୟ ବୈଷ୍ଣବକବି ଯଦୁନନ୍ଦନ ଦାସଙ୍କ ରଚନାର ପ୍ରଭାବ ଅଭିମନ୍ୟୁଙ୍କର ରଚନାକୁ କିପରି ପ୍ରଭାବିତ କରିଛି, ତାହା ମଧ୍ୟ ଏଠାରେ ଲକ୍ଷ୍ୟ କରିବାର କଥା । ପ୍ରେମମୟ ବଂଶୀର ସ୍ୱନରେ କିପରି ହୃଦୟରେ ଯାତନା ସୃଷ୍ଟି କରିଛି, ତାହା କବି ବର୍ଣ୍ଣନା କରିଛନ୍ତି । ଯେପରି—

ରାଇ କହେ କିବା ହେନ | ମୁରଲୀ ବାଜାୟ ଯେନ
ବିଷାମୃତେ ଏକତ୍ର କରିୟା
ଜଲ ନହେ ହିମେ ଜନୁ | କାଁପାଇଛେ ସବତନୁ
ପ୍ରତି ତନୁ ଶୀତଲ କରିୟା ।
ଅସ୍ତ୍ର ନହେ ମନେ ଫୁଟେ | କଟାରିତେ ଯେନ କାଟେ
ଛେଦନ ନା କରେ ହିୟା ମୋର
ତାପ ନହେ ଉଷ୍ଣ ଅତି | ପୋଡ଼ାୟ ଆମାର ମତି
ବିଗୃତେ ନା ପାଇୟେ ଓର ।

ଏହି ସମସ୍ତ ପଦ ଅଭିମନ୍ୟୁଙ୍କର—

"ଅନଳ ନୁହଇ ଦେହ ଦହଇ । ଅସ୍ତ୍ର ନୁହଁଇ ମରମେ ଭେଦଇ" ପ୍ରଭୃତି ପଦର ଅନୁରୂପ ନୁହେଁ କି ?

କବି ଗୌଡ଼ୀୟ ବୈଷ୍ଣବଧର୍ମାବଲମ୍ବୀ ଥିବାରୁ ତାଙ୍କ ଉପରେ ପ୍ରଧାନ ଗୌଡ଼ୀୟ ବୈଷ୍ଣବ ଧର୍ମଗ୍ରନ୍ଥ ଶ୍ରୀ ଚୈତନ୍ୟଚରିତାମୃତର ପ୍ରଭାବ ମଧ୍ୟ ପଡ଼ିଥିଲା । ଶ୍ରୀ ଚୈତନ୍ୟଚରିତାମୃତରେ ପ୍ରେମସମ୍ବନ୍ଧୀୟ ତତ୍ତ୍ୱର ବହୁ ବିଶ୍ଳେଷଣ କରାଯାଇଛି ଏବଂ କବି ଏହାକୁ ସୁନ୍ଦର ଭାବରେ ନିଜର କାବ୍ୟର ରୂପାୟିତ କରିଅଛନ୍ତି । ଶ୍ରୀ କୃଷ୍ଣଦାସ କବିରାଜଙ୍କର ଶ୍ରୀଚୈତନ୍ୟଚରିତାମୃତରେ ୪ର୍ଥ ଅଧ୍ୟାୟରେ ଲିଖିତ ଅଛି ଯେ, ଶ୍ରୀ ଚୈତନ୍ୟ ପ୍ରେମରସ ନିର୍ଯ୍ୟାସ ଆସ୍ୱାଦନ କରିବା ନିମିତ୍ତ ରାଗମାର୍ଗ ଭକ୍ତି ସଂସାରରେ ପ୍ରଚାର କଲେ ।

"ପ୍ରେମ ରସ ନିର୍ଯ୍ୟାସ କରିତେ ଆସ୍ୱାଦନ
ରାଗମାର୍ଗ ଭକ୍ତି ଲୋକେ କରିତେ ପ୍ରଚାରଣ ।" ।୧୫।

ଦେବଦୁର୍ଲଭଙ୍କ ରହସ୍ୟମଞ୍ଜରୀରେ ଯେପରି ଅଛି ଯେ, ରାଗ ଭକ୍ତି ମଧ୍ୟରେ ପ୍ରେମଭକ୍ତି ଶ୍ରେଷ୍ଠ ଏବଂ ସେହି ଭକ୍ତି ଗୋପୀମାନଙ୍କର ସମ୍ପତ୍ତି ଅଟେ । ସେହିପରି ଶ୍ରୀ ଚରିତାମୃତରେ ଚତୁର୍ବିଧା ଭକ୍ତିର ବିସ୍ତୃତ ବିଶ୍ଳେଷଣ କରାଯାଇଛି—

"ଦାସ୍ୟ ସଖ୍ୟ ବାତ୍ସଲ୍ୟ ଆର ଯେ ଶୃଙ୍ଗାର
ଚାରି ପ୍ରେମ ଚତୁର୍ବିଧ ଭକ୍ତର ଆଧାର ।" ।୪୨।

ରହସ୍ୟ ମଞ୍ଜରୀରେ—

"ରାଗଭକ୍ତି ମଧ୍ୟେ ଅଟେ ପ୍ରେମଭକ୍ତି ସାର
ସେ ଭକ୍ତି ଅଟଇ କୋଠ ଗୋପୀମାନଙ୍କର
ଗୋପୀଙ୍କି ଭଜିଲା ଭକ୍ତ ପ୍ରେମଭକ୍ତି ପାଇ
ଅନ୍ୟ କେଉଁ ଭକ୍ତିରେ ପ୍ରାପତ ମୋତେ ନାହିଁ ।"

ଶୃଙ୍ଗାର ହିଁ ମଧୁର ରସ । କଥିତ ଅଛି, "ଶୃଙ୍ଗାର ଏକ ମଧୁର ପର ପ୍ରହ୍ଲାଦକାରକଃ ।" ଶୃଙ୍ଗାର ରସ ଅଧିକ ମାଧୁର୍ଯ୍ୟବନ୍ତ ରସ ହୋଇଥିବାରୁ ତାହା ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥମାନଙ୍କରେ ପ୍ରଧାନ ସ୍ଥାନ ଲାଭ କରିଛି । ସେଥିପାଇଁ ଶ୍ରୀଚରିତାମୃତରେ କୁହାଯାଇଛି--

"ଅତଏବ ମଧୁର ରସ କହି ତାର ନାମ
ସ୍ୱକୀୟା ପରକୀୟା ରୂପେ ଦ୍ୱିବିଧ ସଂସ୍ଥାନ
ପରକୀୟା ଭାବେ ଅତି ରସେର ଉଲ୍ଲାସ
ବ୍ରଜ ବିନା ଇହାର ଅନ୍ୟତ୍ର ନାହିଁ ବାସ ।" (୪।୪୫-୪୬)

ରାଧାଙ୍କର ପ୍ରେମତତ୍ତ୍ୱ ବିଶ୍ଳେଷଣରେ ମଧ୍ୟ କୁହାଯାଇଛି—

ରାଧାକୃଷ୍ଣ ଏକ ଆତ୍ମା ଦୁଇ ଦେହ ଧରି
ଅନ୍ୟୋନ୍ୟ ବିଲାସେ ରସ ଆସ୍ୱାଦନ କରି । ୫୬ ।
ରାଧିକା ହୟେନ କୃଷ୍ଣର ପ୍ରଣୟ ବିକାର
ସ୍ୱରୂପଶକ୍ତି ହ୍ଲାଦିନୀ ନାମ ଯାହାର ।୫୯।
ହ୍ଲାଦିନୀର ସାର 'ପ୍ରେମ' ପ୍ରେମସାର 'ଭାବ'
ଭାବେର ପରମ କାଷ୍ଠା ନାମ 'ମହାଭାବ' ।୬୮।

ଅନ୍ୟତ୍ର କାମ ଓ ପ୍ରେମର ତତ୍ତ୍ୱ କିପରି ଶ୍ରୀଚରିତାମୃତରେ ବିଶ୍ଳେଷିତ ହୋଇଛି, ତାହାର କେତେକ ପଦ ନିମ୍ନରେ ପ୍ରଦତ୍ତ ହେଲା—

'ଗୋପୀ ଗଣେର ପ୍ରେମେର 'ରୂଢ଼ଭାବ' ନାମ
ବିଶୁଦ୍ଧ ନିର୍ମଳ ପ୍ରେମ କଭୁ ନହେ କାମ । ୧୬୨ ।
କାମ ପ୍ରେମ ଦୋହାଁକାର ବିଭିନ୍ନ ଲକ୍ଷଣ
ଲୌହ ଆର ହେମ ଯୈଛେ ସ୍ୱରୂପେ ବିଲକ୍ଷଣ । ୧୬୪ ।
ଆତ୍ମେନ୍ଦ୍ରିୟ ପ୍ରୀତିବାଞ୍ଛା ତାରେ ବଲି 'କାମ'
କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ଧରେ 'ପ୍ରେମ' ନାମ । ୧୬୫ ।
ଅତଏବ କାମ-ପ୍ରେମେ ବହୁତ ଅନ୍ତର
କାମ ଅନ୍ଧତମଃ ପ୍ରେମ ନିର୍ମଳ ଭାସ୍କର । ୧୭୧ ।
ଅତଏବ ଗୋପୀଗଣେର ନାହିଁ କାମଗନ୍ଧ
କୃଷ୍ଣସୁଖ ଲାଗି ମାତ୍ର କୃଷ୍ଣ ସେ ସମ୍ବନ୍ଧ । ୧୭୨ ।
କାମ ଗନ୍ଧହୀନ ସ୍ୱାଭାବିକ ଗୋପୀପ୍ରେମ
ନିର୍ମଳ ଉଜ୍ଜ୍ୱଳ ଶୁଦ୍ଧ ଯେନ ଦଗ୍ଧ ହେମ । ୨୦୧ ।

କେବଳ ଏତିକି ନୁହେଁ, କବି ତାଙ୍କର ପ୍ରେମତତ୍ତ୍ୱ ସମ୍ବନ୍ଧୀୟ ବିଭିନ୍ନ ଉପାଦାନ ଶ୍ରୀ ଚୈତନ୍ୟଚରିତାମୃତ, ଭକ୍ତିରସାମୃତସିନ୍ଧୁ, ଷଡଗୋସ୍ୱାମୀଙ୍କର ପ୍ରୀତିସନ୍ଦର୍ଭ ଓ ବହୁ ବିଭିନ୍ନ ବୈଷ୍ଣବ ପଦାବଳୀରୁ ଗ୍ରହଣ କରି ସ୍ୱୀୟ ମନୋହର କଳ୍ପନା ବଳରେ ସବୁକୁ ପଲ୍ଲବିତ ପୁଷ୍ପିତ ଓ ଫଳିତ କରିଅଛନ୍ତି । ଏହା ହିଁ ହେଉଛି ପ୍ରେମତତ୍ତ୍ୱ ବିଶ୍ଳେଷଣରେ ତାଙ୍କ କବିଲେଖନୀର ବୈଶିଷ୍ଟ୍ୟ ।

## 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ 'ରସ'ର ବିଚାର—

ରସକଲ୍ଲୋଳ ପରି ବିଦଗ୍ଧ ଚିନ୍ତାମଣି ଏକ ଭକ୍ତିରସାତ୍ମକ କାବ୍ୟ । ଏହା ମୁଖ୍ୟତଃ ମଧୁର ବା ଶୃଙ୍ଗାର ରସାଶ୍ରିତ ହେଲେହେଁ ଏଥିରେ କରୁଣ, ବାତ୍ସଲ୍ୟ ଓ ଶାନ୍ତରସର ମଧୁର ସମନ୍ୱୟ ଘଟିଛି । ମନୁଷ୍ୟ ଶରୀରର ଆତ୍ମାତୁଲ୍ୟ କାବ୍ୟର ଆତ୍ମାରସ ବା ଅନ୍ୟାର୍ଥରେ 'ରସାତ୍ମକଂ ବାକ୍ୟଂ କାବ୍ୟମ୍'—ଏବଂ କବି ଏହି କାବ୍ୟର ରସର ଚୂଡ଼ାନ୍ତ ସ୍ଫୁର୍ତ୍ତି ଘଟାଇଛନ୍ତି । କବି ବିଦଗ୍ଧ ଚିନ୍ତାମଣି କାବ୍ୟର ମଙ୍ଗଳାଚରଣ ଛାନ୍ଦରେ ଲେଖିଛନ୍ତି ଯେ, ସେ ନିସ୍ତାର ସହିତ 'ପ୍ରେମଭକ୍ତିରସ' ପ୍ରତି ଉନ୍ମୁଖ । ଯଥା :—

ଏମନ୍ତ ମହିମାବନ୍ତ ପ୍ରେମଭକ୍ତିରସ
ଏକନିଷ୍ଠେ ଅଭିମନ୍ତ୍ୟୁ କବି କରେ ଆଶ । (୧।୧୯)

ଏବଂ ଏହି କାବ୍ୟ 'ଘୃତବନ୍ତି ରସିକ ହୃଦକୁ ଦେବା କାଣି'—ବିଦଗ୍ଧ ଚିନ୍ତାମଣିର ନାୟକ ରସରାଜ ଶ୍ରୀକୃଷ୍ଣ ଏବଂ ନାୟିକା ରସେଶ୍ୱରୀ ଶ୍ରୀରାଧା ଏବଂ ବର୍ଣ୍ଣିତ ରସ ହେଲା 'ରସସାର ଶୃଙ୍ଗାର'; ତେଣୁ କାବ୍ୟଟି ଆମୂଳଚୂଳ ରସାପ୍ଳୁତ ହୋଇଉଠିଛି

କହିବା ବାହୁଲ୍ୟ ହେବ । କାବ୍ୟରେ ରସର ଉତ୍କର୍ଷ ସାଧନ ନିମିତ୍ତ ସେ କହିଛନ୍ତି ଯେ, ମଧୁମକ୍ଷିକା ବିଭିନ୍ନ ପୁଷ୍ପରୁ ମଧୁ ଆହରଣ କଲା ପରି ସେ ବିଭିନ୍ନ ଗ୍ରନ୍ଥରୁ ରସ ଆହରଣ କରି ଏହି କାବ୍ୟରେ ଗର୍ଭିତ କରିଅଛନ୍ତି—

ସୁଜନେ ଆଦର ମିଳ ପରି ଏ କବିତ୍ୱ
ସର୍ବ ସୁନାମ ସୁରସ କରିଛୁ ଏକତ୍ର— ।୪୬।
ଗ୍ରନ୍ଥ ବଡ଼ ବୋଲିବା କି ବାଧୁ ଲୁବ୍ଧ ହେଲେ
ରସନିନ୍ଦୁକେ ସେପରି ବୋଲନ୍ତି ଅଖିଳେ— ।୧୩।

କବି ତାଙ୍କର ଅଧିକାଂଶ ଛାନ୍ଦରେ 'ରସ', 'ରସିକ', 'ରସିକଗ୍ରାହକ' ପ୍ରଭୃତି ବିଭିନ୍ନ ଭାବରେ ପାଠକମାନଙ୍କୁ ଛାନ୍ଦ ପାଠ କରିବାକୁ କହିଅଛନ୍ତି । ଯେପରି—

ଅପୂର୍ବାନୁପ୍ରାସରେ ଏ ଛାନ୍ଦରସ
ଅକୈତବରେ ଘେନ ହେ ବିଦୁଷ । (୫।୧)

× × × ×

ଆନନ୍ଦେ କୋବିଦେ ପିଅ ଏ ରସ ଶ୍ରବଣେ । (୭।୧)

× × × ×

ଧୀରେ ଶୁଣ ଏ ଉତ୍ତରୁ ଯେତେ ରସ
ଧୀରେ ଭଳି ବିଶାଖା ହୋଇ ବିରସ । (୧୦।୧)

× × × ×

ରସ ଏ ଛାନ୍ଦେ ବିଦୁଷ । ରସ ଆଦ୍ୟପ୍ରାନ୍ତେ ବାସ । (୧୫।୧)

× × × ×

ରସିକେ ସେବନ୍ତୁ ସେ ରସିଣ ଶ୍ରବଣ କରି ଦେଇମତି । (୨୪।୧)

× × × ×

ବେଶ ପେଖିଲ ସେମନ୍ତ ଛାନ୍ଦ । ରସିକ ଶିବ ଶିଖିଭୂଷା ଗୃନ୍ଦ ।

× × × ×

ଏ ଉତ୍ତରୁ ସୁବିଦୁଷ ସାବଧାନେ ଘେନ ରସ
ଫଣିମୁଖ ଆଗମନ ଦିବସ ଶେଷ । (୩୦।୧)

× × × ×

ଧୀରଙ୍କ ହୃଦ ପଦ୍ମ ମିହିର । ରସିକ ରସ ରତନ ଭଣ୍ଡାର । (୩୪।୧)

× × × ×

ରସାମୃତସିନ୍ଧୁ ଲୀଳା ଲହରୀ । ରସିକଙ୍କ ହୃଦ ପଞ୍ଜରୀ ସାରୀ । (୭୦।୨୪)

ଏହିପରି ଅସଂଖ୍ୟ ପଦର ଉଦାହରଣ କାବ୍ୟରୁ ଦିଆଯାଇପାରେ । ଏହିସବୁ ଉକ୍ତିରୁ ଜଣାଯାଏ ଯେ ବିଦଗ୍ଧ ବା ରସିକ କବି ଅଭିମନ୍ୟୁ କାବ୍ୟର ଶତାଧିକ ସ୍ଥଳରେ 'ରସ' ଶବ୍ଦର ପ୍ରୟୋଗ କରିବା ହେତୁ ଜଣାଯାଏ ଯେ, ସେ କାବ୍ୟରେ ରସର ଉତ୍କର୍ଷସାଧନ କରିବା ନିମିତ୍ତ ସତତ ଚେଷ୍ଟା କରିଅଛନ୍ତି ଏବଂ ଫଳରେ କାବ୍ୟ ଯଥାର୍ଥତଃ ରସବନ୍ତ କାବ୍ୟ ହୋଇଛି ।

ପ୍ରାଚୀନ ଭାରତର ମହର୍ଷିମାନେ ରସକୁ ନିର୍ବିକଳ୍ପ ଆନନ୍ଦ ରୂପେ ବର୍ଣ୍ଣନା କରିଅଛନ୍ତି । ଯଥା—'ରସୋ ବୈସଃ । ରସହ୍ୟେବାୟଂ ଲବ୍ଧାନନ୍ଦୀ ଭବତି' (ତୈତ୍ତିରୀୟ ଉପନିଷଦ ୨।୭) । ଏଠାରେ ବ୍ରହ୍ମାଙ୍କୁ ରସର ଆଧାରରୂପେ ଧରାଯାଇଛି । ସଂକ୍ଷେପରେ ଯାହା ଅପୂର୍ବ ଚମତ୍କାରିତ୍ୱ ପ୍ରାଣରେ ଆନୟନ କରିବାରେ ସମର୍ଥ, ତାହା ହିଁ ରସ ।

ବିଭିନ୍ନ ଅଲଙ୍କାର ଶାସ୍ତ୍ରରେ ନଅଗୋଟି ରସର ନିର୍ଦ୍ଦେଶ ଦିଆଯାଇଛି । ଯଥା :—ଆଦି (ଶୃଙ୍ଗାର), ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର ଓ ଶାନ୍ତ । କାହା କାହା ମତରେ ବାତ୍ସଲ୍ୟରସ ରସର ଅନ୍ତର୍ଭୁକ୍ତ । କିନ୍ତୁ ଗୌଡ଼ୀୟ ବୈଷ୍ଣବଗଣ ପ୍ରଧାନରସ ଭାବରେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର (ଶୃଙ୍ଗାର) ଏହି ଚାରିଟି ରସକୁ ଓ ପୂର୍ବୋକ୍ତ ନଅ ରସକୁ ଗୌଣରସ ଭାବରେ ଗ୍ରହଣ କରିଥାନ୍ତି ।

ବିଦଗ୍ଧ ଚିନ୍ତାମଣିରେ ଶୃଙ୍ଗାର ରସର ବ୍ୟଞ୍ଜନା : ଶୃଙ୍ଗାର ରସ ଆଦିରସ ଭାବରେ କଥିତ ହେଲେ ହେଁ, ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ତାହା 'ଉଜ୍ଜ୍ୱଳ' ବା 'ମଧୁର' ରସ ଭାବରେ କଥିତ । ଶୃଙ୍ଗାର ବିପ୍ରଲମ୍ଭ ଓ ସମ୍ଭୋଗ ଭେଦରେ ଦୁଇ ଭାଗରେ ବିଭକ୍ତ । ଯେତେବେଳେ ନାୟକନାୟିକାଙ୍କର ମିଳନ ନିମିତ୍ତ ଚିତ୍ତ ଆକୃଷ୍ଟ ହୋଇଥାଏ; କିନ୍ତୁ ଅଭୀଷ୍ଟ ଲାଭ ହୋଇପାରେ ନାହିଁ, ସେତେବେଳେ ତାହା ବିପ୍ରଲମ୍ଭ ଶୃଙ୍ଗାର ନାମରେ ଅଭିହିତ ହୋଇଥାଏ । ଏହି ବିପ୍ରଲମ୍ଭ ସମ୍ଭୋଗ ଶୃଙ୍ଗାରର ପୁଷ୍ଟିକାରକ ହୋଇଥାଏ । ପୂର୍ବରାଗ, ମାନ, ପ୍ରେମ ବୈଚିତ୍ତ୍ୟ ଏବଂ ପ୍ରବାସ ଭେଦରେ ବିପ୍ରଲମ୍ଭ ଶୃଙ୍ଗାର ଚାରି ପ୍ରଧାନ ଭାଗରେ ବିଭକ୍ତ । ବିଦଗ୍ଧ ଚିନ୍ତାମଣିରେ ଏହି ମଧୁର ବା ଶୃଙ୍ଗାରରସର ବହୁଳ ବର୍ଣ୍ଣନା ଆଦ୍ୟୋପାନ୍ତ ପରିଲକ୍ଷିତ ହୋଇଥାଏ । ରାଧା ଏବଂ କୃଷ୍ଣଙ୍କର ସ୍ନେହ ବର୍ଣ୍ଣନାରେ କବି ବିପ୍ରଲମ୍ଭ ଶୃଙ୍ଗାରର ବର୍ଣ୍ଣନାରୁ କେତେକ ପଦ ଉଦାହରଣ ସ୍ୱରୂପ ଦିଆଗଲା :—

'କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର ।
ଦେଖି ନବଘନ ତାର ଅପଘନ ପୁଲକ ହୁଅଇ ଥର ଥର ।

ଘନସୁନ୍ଦର ହେ । ଯମୁନା ଯିବାକୁ ଡରଡର ।
ଏ ଅଢ ବଚନ କହ୍ଲରେ ତାଣ ଲେଖି ଚ୍ୟୁମ୍ବ ଦାଏ ବାର ବାର ।
ଦେଖି ତମାଳକୁ ବଗୁର କୋଳକୁ ସହ ହେଉଥାଇ ବାହୁଯୁଗ ।
ଇତ୍ୟାଦ । (୨।୨-୩)

× × ×

ରାଜନୃପତିନନ୍ଦନା ସହଜେ ତୁ ପରା
ତନୁ ଅଳ୍ପ ଦାନରେ କୃପଣ ନୋହୁଁ ଧୀରା ।
ସରଦର୍ପକ ବାଣରେ ମରାଇ କ ଯଣ
ପର ଶତ୍ରୁକୁ କେବେ ହେଁ ନ ଦେଖୁ ପୌରୁଷ । (୩୪।୧୯)

## ସମ୍ଭୋଗ ଶୃଙ୍ଗାରର ବର୍ଣ୍ଣନା :—

କୁସୁମ ଶେଯେ ବସି କୋଳେ ବସାଉ ବେଣୁଧର ସୁଷମା ଅକଟନ
ସଜଳ ନବଘନ କୋଳେ ବଳିତ ଘନାଳନ୍ତା ହେବାର ସୁପତନ ହେ ।
କମ୍ପେ ଧନୀ । ହେବାରୁ ଅନଅନୁଭବୀ । କ ମାନଇ କମ୍ପିତ ଛବି ।
କାମ ହେବ ପିତୁଳା ଯନ୍ତ୍ର ନର୍ତ୍ତନ ତୁଳା ବୋଲପାରିବ କେଉଁ କବି ।
(୮୧।୨୪)

ଏହା ବ୍ୟତୀତ ସଙ୍ଗମ ପୂର୍ବରୁ ଦର୍ଶନ ଶ୍ରବଣାଦଦ୍ୱାରା ପୂର୍ବରାଗର ବର୍ଣ୍ଣନା ହୋଇଛୁ । ଏଥିରେ ସାକ୍ଷାତ ଦର୍ଶନ, ସ୍ୱପ୍ନଦର୍ଶନ ଓ ଦୂତୀ ଦଶୀଙ୍କ ମୁଖରୁ ପରୋକ୍ଷରେ ଗୁଣ ଶ୍ରବଣରେ ପୂର୍ବରାଗ କାବ୍ୟରେ ପୁଷ୍ଟି ଲଭ କରିଛୁ । ରାଧାଙ୍କ ଅବସ୍ଥାରେ କବି ବ୍ୟାଧି, ଶଙ୍କା, ନିର୍ବେଦ, ଔତ୍ସୁକ୍ୟ, ଦୈନ୍ୟ, ନିଦ୍ରା, ବିଷାଦ, ଜଡ଼ତା, ଉନ୍ମାଦ ଓ ମୋହ ପ୍ରଭୃତି ବିଭିନ୍ନ ସଞ୍ଚାରୀଭାବର ମଧ୍ୟ ବର୍ଣ୍ଣନା ଦେଇଅଛନ୍ତି ।

## କରୁଣ ରସ—

ଏଠାରେ ବିରହ ବା ବିଚ୍ଛେଦଜନିତ କରୁଣ ରସ ପ୍ରାପ୍ତ କାବ୍ୟର ବିଭିନ୍ନ ଛନ୍ଦରେ ପରିଲକ୍ଷିତ ହୋଇଥାଏ । ଯେପରି :—

ଏତେ କଦର୍ଥନା ପାଉ କାହିଁକ ।
ଶଣଶଣି ପ୍ରାପ୍ତ ହେଉ ନାହିଁକ ।
କୁମ୍ଭକାର କଣ୍ଟ ପକ୍ଷା ତୁ କହ ।
କୃଷ୍ଣ ଦେହ ପାଇ ନଷ୍ଟି କେ ରହ ।
ଶ୍ୟାମ କାମ ଧର । ଯା ଯା ଅନୁକୂଳ କର ବାହାର । (୩୯।୩୬)

× × ×

ତମ୍ପ ଲୋହ ପାଶ ମସ୍ୟ ପର୍ଯ୍ୟସ୍ତେ ।
ତନୁ ବଚେଷ୍ଟା ହୋଇଲା ଉଦସ୍ତେ ।
କ୍ଷୀରସିନ୍ଧୁକ ମନ୍ଥଇ ମନ୍ଦର ।
ତେମନ୍ତ ହେଲ ହୃଦୟ ଭିତର ।
ପ୍ରାଣ ସନ୍ତାପିତ । ଯଥା ଗର୍ତ୍ତାନଳ ଧୂମାଧୂପିତ । (୩୯-୩୯)

## ବାତ୍ସଲ୍ୟ ରସ—

ବାତ୍ସଲ୍ୟ ରସ ବର୍ଣ୍ଣନାରେ ବିଦଗ୍ଧ ଚିନ୍ତାମଣି ଓଡ଼ିଆ କାବ୍ୟ ଜଗତରେ ପ୍ରସିଦ୍ଧି ଲାଭ କରିଛି । ରସକଲ୍ଲୋଳ ଅପେକ୍ଷା ବିଦଗ୍ଧ ଚିନ୍ତାମଣିରେ କବି ଗୌଡ଼ୀୟ ବୈଷ୍ଣବଧର୍ମର ରସ ନିଷ୍ପତ୍ତି ଅନୁଯାୟୀ ବାତ୍ସଲ୍ୟରସର ଅପୂର୍ବ ବର୍ଣ୍ଣନା ଦେଇଅଛନ୍ତି । ତାହା ତାଙ୍କର ଗୁରୁ କବିସୂର୍ଯ୍ୟ ବ୍ରହ୍ମାଙ୍କର ଯୁଗଳରସାମୃତଲହରୀରେ ପରିଲକ୍ଷିତ ବାତ୍ସଲ୍ୟ ରସର ମଧୁରତାକୁ ବଳିପଡ଼ିଛି । 'ଧୀରେ ଧେନ କାନନରେ କୃଷ୍ଣ ବିଳମ୍ବିତ, ବାତ୍ସଲ୍ୟମମତା ଯେନ ଭାଳୁଛନ୍ତି ମାତ, ମୋ କଳାମାଣିକ ରେ ।' ଅଥବା ୮୬ ଛାନ୍ଦର 'ଧୀରେ ଧେନ ଏ ଉତ୍ତରେ ଗୋବିନ୍ଦ ପ୍ରଭାତ ଶୀତଳ ଧୀରେ', ୬୮ ଛାନ୍ଦର ଶ୍ରୀକୃଷ୍ଣଙ୍କର ଗୋଚାରଣ ଦର୍ଶନ, ଅଥବା ୬୪ ଛାନ୍ଦର ଗୋଚାରଣବିଧି ବର୍ଣ୍ଣନା ବିଶେଷ ଭାବରେ ପାଠକର ଚିତ୍ତ ଆକୃଷ୍ଟ କରିଥାଏ । ମଧ୍ୟଯୁଗ ଓଡ଼ିଆ ସାହିତ୍ୟରେ ଶୃଙ୍ଗାର ଓ କରୁଣ-ରସର ବର୍ଣ୍ଣନା ପ୍ରାୟ ଅଧିକାଂଶ କାବ୍ୟରେ ଦେଖାଯାଏ । ବାତ୍ସଲ୍ୟରସର ବର୍ଣ୍ଣନାରେ କିନ୍ତୁ ସେ କୌଣସି କବିଙ୍କ ବାତ୍ସଲ୍ୟରସର ବର୍ଣ୍ଣନାକୁ ଟପି ଯାଇଛନ୍ତି । ବାତ୍ସଲ୍ୟରସର ଉଦାହରଣରେ—

ଧୀରେ ଧେନ କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ଯେନ ଭାଳୁଛନ୍ତି ମାତ ।
କଳାମାଣିକ ରେ । (୬୨।୧)

ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ ।
ହୃଦ ତାପ ବିନାଶନେ ତୁ ହରିଚନ୍ଦନ । ୫ ।
ତୋତେ ମୁଁ ଧଇଲେ ଗୋଳ ହୋଇଯାଉ ତୁହି
ତୋ ଦୁର୍ବଳ ଦେଖି କାହିଁ ପଶିବଇ ମୁହିଁ । ୭ ।
ଡାକିନୀ ଲେଖିନ୍ତି ବୋଲି ଡରୁଥାଇଁ ମନେ
ବାର ବାର ବାରୁଥାଇଁ ଯିବାପାଇଁ ବନେ । ୮ ।
କୋଳେ ଶୋଇଥାଉ ନିଦ ଭାଙ୍ଗିଗଲେ ତୋର
ଚମକି ମୋ ଗଳାଛନ୍ଦ ତାକୁ ମାତା ଗିର । ୩ ।
ଏମନ୍ତ ଚନ୍ଦନ ପୁଣି ବନବାସୀ ହେବ
ଜନନୀ ନନ୍ଦନ ଧରି କି କରି ରହିବ ।୪୦। ଇତ୍ୟାଦି

ବିଦଗ୍ଧ ଚନ୍ଦ୍ରାମଣି ଏକ ଭକ୍ତିରସାତ୍ମକ କାବ୍ୟ ହୋଇଥିବାରୁ ଏଥିରେ ଭକ୍ତିଭାବ ବା ଶାନ୍ତରସ ଆମୂଳଚୂଳ ପ୍ରକଟିତ ହୋଇଛି । ତାହାର ଉଦାହରଣରେ କେତେକ ପଦ ହେଉଛି :—

'ଦୀନ ଅଭିମନ୍ୟୁ ଚନ୍ଦ୍ରେ ନନ୍ଦକାନ୍ତ
ଚନ୍ଦ୍ରଚକୋର ଭାବନା ଯେନ ହେ । ଗିରିଧାରୀ
ପାଶେ ରଖ ଏ ଦୀନକୁ ଦାସ କରି
କୃପାସିନ୍ଧୁ କୀର୍ତ୍ତି ଅଛି ବିଶ୍ୱେ ଭରି । (୭୯।୨୬)

× × ×

ଓଷଧୀଶାନନ ହେ ମାଗୁଛି ପଦ ଧରି
ଓ କରିବି ଆଲୋ ଦାସୀ ଡାକିଲେ କଣେଗ୍ରୀ । (୧।୧୩)

× × ×

ଅଧର୍ମ ମାର୍ଗକୁ ନ ଯିବି । ତଦାସ୍ୟ ସେବା ଆଚରିବି ।
ଦନ୍ତେ ଧରି ତୃଣକୁ ମାଗୁଛି ଶରଣକୁ
ନିରତେ ତୁମ୍ଭ ସଙ୍ଗେ ଥିବି ହେ । (୮୧।୩୨)

× × ×

ନାମକୀର୍ତ୍ତନରେ ମାତ୍ର ନର୍ତ୍ତନରେ ପ୍ରେମ ଭୋଳେ ଅରେ ଅରେ ।
ପଦଚନ୍ଦ୍ରରୁ ଯେ, ଧୂଳି ଯେନି ହୃଦେ ବୋଳି । ପୁଣି କ୍ଷଣେ କ୍ଷଣେ
ସେ ଭୂମି ଲକ୍ଷଣେ ରହି ପୁଣି ଯାନ୍ତି ଚଳି । (୮୦।୩୬)

ଏହିପରି ବହୁ ପଦ କାବ୍ୟରେ ରହିଛି, ଯେଉଁଥିରେ ଉଭୟ ଶାନ୍ତରସ ଓ ଦାସ୍ୟଭକ୍ତି ସ୍ଫୁରିରହିଛି । ବିଦଗ୍ଧ ଚନ୍ଦ୍ରାମଣି ଏକ ଭକ୍ତିରସାତ୍ମକ କାବ୍ୟ ହୋଇଥିବାରୁ ଏଥିରୁ ଭକ୍ତିରସାତ୍ମକ ପଦର ବହୁ ଉଦାହରଣ ଦିଆଯାଇ ପାରିବ ।

ମୋଟ ଉପରେ ବିଦଗ୍ଧ ଚନ୍ଦ୍ରାମଣି ବିଦଗ୍ଧ ପାଠକମାନଙ୍କ ନିମିତ୍ତ ଏକ ରସରତ୍ନାକର କାବ୍ୟ କହିଲେ ଅତ୍ୟୁକ୍ତି ହେବ । ମୁଖ୍ୟତଃ ଏହି କାବ୍ୟରେ ଶୃଙ୍ଗାର ବା ମଧୁରରସର ସ୍ଫୂର୍ତ୍ତି ଘଟିଛି ଓ ଅନ୍ୟାନ୍ୟ ପରିଲକ୍ଷିତ ରସସମୂହ ଭକ୍ତିମଧୁର ରସକୁ ପରିପୁଷ୍ଟ କରିବା ନିମିତ୍ତ ସହଯୋଗ କରିଅଛନ୍ତି ।

## ରୀତିଯୁଗର କବି ଅଭିମନ୍ୟୁ

## ଓଡ଼ିଆ ରୀତିଯୁଗ ସାହିତ୍ୟର ବୈଶିଷ୍ଟ୍ୟ

**ରୀତି ଶବ୍ଦର ଅର୍ଥ**— 'ରୀତି' ଶବ୍ଦର ଆଲୋଚନାରେ 'ରୀ' ଧାତୁର ଅର୍ଥ ଗତି ଏଥିରେ 'ତି' ପ୍ରତ୍ୟୟ ଯୁକ୍ତ ହୋଇ 'ରୀତି' ଶବ୍ଦର ସୃଷ୍ଟି ଘଟିଥାଏ । ମୋଟ

ଉପରେ ବଶିଷ୍ଟ ପଦରଚନା ବା 'ପଦସଘଟନା' ରୀତ ଭାବରେ ବହୁ ପ୍ରାଚୀନ କାଳରୁ ସଂସ୍କୃତ ସାହିତ୍ୟରେ ବ୍ୟବହୃତ ହୋଇଆସୁଛି ।

'ବଶିଷ୍ଟ ପଦରଚନା ରୀତଃ'—କାବ୍ୟାଲଂକାର ସୂତ୍ର (ବାମନ)

'ପଦ ସଘଟନା ରୀତଃ'—ସାହିତ୍ୟଦର୍ପଣ (ବଶ୍ୱନାଥ) ।

ଇଂରେଜୀ ସାହିତ୍ୟକ ଓ ପ୍ରାବନ୍ଧକ କଲରଜ୍ ରୀତ ବା ଶୈଳୀର ସଜ୍ଞା ଦେବାକୁ ଯାଇ କହିଅଛନ୍ତି—'The best words in best order ।' କେଉଁ ଶବ୍ଦକୁ କେଉଁ ଯାଗାରେ ପ୍ରୟୋଗ କରିବା ଉଚିତ, ଏହାର ବଚାରକୁ ରୀତ ବୁଝାଯାଇପାରେ । କେଉଁ ଯାଗାରେ ଓଜନଗୁଣସମ୍ପନ୍ନ, କେଉଁଠାରେ ବା ମାଧୁର୍ଯ୍ୟ ଓ ପ୍ରସାଦଗୁଣ ସମ୍ପନ୍ନ ଶବ୍ଦାବଳୀ ପ୍ରଯୁକ୍ତ ହେବ, ଏଥିପ୍ରତ ରୀତବାଦୀ କବମାନେ ଯଥାଯଥ ଦୃଷ୍ଟି ଦେଇଥାନ୍ତି ।

ସଂସ୍କୃତ ସାହିତ୍ୟରେ ଯେଉଁ ଅର୍ଥରେ 'ରୀତ' ଶବ୍ଦର ବ୍ୟବହାର କରାଯାଇଛି, ସେ ଅର୍ଥରେ ଓଡ଼ିଆ ସାହିତ୍ୟରେ ରୀତ ଶବ୍ଦର ବ୍ୟବହାର ହୋଇ ନ ଥାଏ । ଓଡ଼ିଆ ବା ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟରେ ବଶିଷ୍ଟ ପଦ୍ଧତ ଅନୁଯାୟୀ କାବ୍ୟ ରଚନା କରିବା ହେଉଛି ରୀତ ବା ଶୈଳୀର ଅର୍ଥ । ଓଡ଼ିଆ ସାହିତ୍ୟରେ 'ରୀତଯୁଗ' 'ରୀତକାବ୍ୟ' ପ୍ରଭୃତ ପଦ ମଧ୍ୟଯୁଗ, ଭଞ୍ଜଯୁଗ ବା କାବ୍ୟଯୁଗକୁ ଓ ସେହି ଯୁଗର ରଚନା ଧାରା ସମୂହକୁ ବୁଝାଇଥାଏ । ଭଞ୍ଜଯୁଗର କାବ୍ୟ ସମୂହ ଅଲଂକାର, ରସ, ଗୁଣ, ଧ୍ୱନ, ନାୟକ-ନାୟିକା ଭେଦ ପ୍ରଭୃତ କାବ୍ୟଶାସ୍ତ୍ର ବା ଅଲଂକାର ଶାସ୍ତ୍ରର ଭିତ୍ତି ଉପରେ ପ୍ରତଷ୍ଠିତ ।

## (ଗ) ରୀତ ଓ ଆଲଂକାରିକ ସାହିତ୍ୟର ପ୍ରାଚୀନତା—

ଓଡ଼ିଆ ସାହିତ୍ୟର ଇତହାସରେ ରୀତକାବ୍ୟର ଯୁଗ ଖ୍ରୀ: ୧୬ଶ ଶତାବ୍ଦୀର ପ୍ରଥମ ଭାଗରୁ ଖ୍ରୀ: ୧୯ଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ବସ୍ତୃତ । ଏହା ଦୀର୍ଘ ତଶହ ବର୍ଷର ସାହିତ୍ୟ । ଭାରତରେ ଏହି ରୀତ ସାହିତ୍ୟର ଆରମ୍ଭ ବହୁ ପ୍ରାଚୀନକାଳରୁ ଘଟିଛି । ଅଲଂକୃତ କାବ୍ୟର ଶୈଳୀର ଧାରା ଭାରତରେ ପ୍ରାୟ ୨୦୦୦ ବର୍ଷ ପୂର୍ବରୁ ଥିବାର ଐତହାସିକ ପ୍ରମାଣ ପାଉଥାଉଁ । ଖ୍ରୀ: ପୂ: ୧୫୦ରେ ଗିର୍ନାରର ରୁଦ୍ରଦାମନଙ୍କ ଶିଳାଲେଖରେ ଆମ୍ଭେମାନେ କାବ୍ୟରେ ଆଲଙ୍କାରିକତା ଥିବାର ଲକ୍ଷ୍ୟ କରୁଁ । ସ୍ଫୁଟଲଘୁ ମଧୁର ଚତ୍ରକାନ୍ତ ଶବ୍ଦ ସମୟୋଦାରାଲଂକୃତ ଗଦ୍ୟପଦ୍ୟ (କାବ୍ୟ ବଧାନ ପ୍ରବୀଣେନ) ପଦ୍ୟରୁ ତତ୍କାଳୀନ ଅଲଂକାର ଶାସ୍ତ୍ରର ଆଭାସ ମିଳେ । ପ୍ରତ୍ନତତ୍ତ୍ୱବତ୍ ବ୍ୟୁଲର କହନ୍ତି ଯେ, ପ୍ରଶସ୍ତିରେ ଥିବା 'ଅଲଂକୃତ' ଶବ୍ଦଟି ଭାରତୀୟ ରୀତ ସାହିତ୍ୟର

ପ୍ରାଚୀନତମ ସୂଚନା ଆଲୋଚନାର ସମ୍ମୁଖରେ ଉପସ୍ଥାପିତ କରିଥାଏ (୧)। ଏହି ରୀତି ସାହିତ୍ୟ ବା ଆଲଙ୍କାରିକ ସାହିତ୍ୟ ଏକ ସମୟରେ 'ରାଜାଶ୍ରିତ' ସାହିତ୍ୟ ଥିଲା। କେବଳ ଭାରତ ନୁହେଁ, ପାଶ୍ଚାତ୍ୟ ଦେଶରେ ମହାକବି ସେକ୍‌ସପିୟରଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନ ସୁଦ୍ଧା ନାମକୁ ହେଉ ପଛେ 'ରାଜକବି'ଙ୍କର ସ୍ଥିତି ରହିଛି। ଖ୍ରୀ: ପ୍ରଥମ ଶତାବ୍ଦୀର ନାଟ୍ୟକାର ଓ କବି ଅଶ୍ୱଘୋଷ, ଖ୍ରୀ: ପଞ୍ଚମ ଶତାବ୍ଦୀର ମହାକବି କାଳିଦାସ, ଖ୍ରୀ: ସପ୍ତମ ଶତାବ୍ଦୀର କବି ବାଣଭଟ୍ଟ, ଖ୍ରୀ: ଷଷ୍ଠ ଶତାବ୍ଦୀର କବି ଭାରବୀ ଯଥାକ୍ରମେ କୁଷାଣ ସମ୍ରାଟ କନିଷ୍କ, ଗୁପ୍ତବଂଶୀୟ ରାଜା ଚନ୍ଦ୍ରଗୁପ୍ତ, ହର୍ଷବର୍ଦ୍ଧନ ଓ କାଞ୍ଚି ରଜାଙ୍କର ସଭାକବି ବା ସଭାପଣ୍ଡିତ ଥିଲେ। ସଂସ୍କୃତ ସାହିତ୍ୟର ଏହି ସର୍ବଶ୍ରେଷ୍ଠ ରୀତିକବିଗଣ ରାଜପୃଷ୍ଠପୋଷକତା ଲାଭ କରିଥିବାର ଜଣାପଡ଼େ। ରାଜା ଓ କବିଙ୍କୁ ନେଇ ଅନେକ ସୁନ୍ଦର ଲୋକକଥା ଭାରତରେ ସର୍ବତ୍ର ପ୍ରଚଳିତ ଅଛି। ଆମର ଓଡ଼ିଶାରେ ଖ୍ରୀ: ଚତୁର୍ଦ୍ଦଶ ଶତାବ୍ଦୀର ଆଲଙ୍କାରିକ ବିଦ୍ୟାଧର ରାଜା ନରସିଂହଙ୍କର ପୃଷ୍ଠପୋଷକତାରେ ସୁପ୍ରସିଦ୍ଧ 'ଏକାବଳୀ' ଅଲଙ୍କାର ଗ୍ରନ୍ଥ ରଚନା କରିଥିଲେ। ଏକାବଳୀର ବିଭିନ୍ନ ଆଲଙ୍କାରିକ ଉଦାହରଣରେ ରାଜା ନରସିଂହଙ୍କର ଉଚ୍ଛ୍ୱସିତ ପ୍ରଶଂସା ଦେଖିବାକୁ ମିଳେ। କବି ନିବେଦନ କରିଛନ୍ତି :—

"ଏଷ ବିଦ୍ୟାଧରସ୍ତେଷୁ କାନ୍ତା ସମ୍ମିତ ଲକ୍ଷଣମ୍
କରୋମି ନରସିଂହସ୍ୟ ଚାଟୁ ଶ୍ଳୋକାନୁଦାହରନ୍।"

ଖ୍ରୀ: ଷୋଡଶ ଶତାବ୍ଦୀର ଅନ୍ୟ ଏକ ଓଡ଼ିଶାର ବଳିଷ୍ଠ ଆଲଙ୍କାରିକ କବି ଓ ପଣ୍ଡିତ ଏବଂ "ଅଷ୍ଟାଦଶ ଭାଷାର ବାର ବିଳାସିନୀ ଭୁଜଙ୍ଗ" ବିଶ୍ୱନାଥ କବିରାଜ ଉତ୍କଳରାଜ ଚତୁର୍ଥ ନିଶଙ୍କ ଭାନୁଦେବ (ଖ୍ରୀ: ୧୨୧୪—୧୪୩୫)ଙ୍କର ସଭାକବି ଓ ପଣ୍ଡିତ ଥିଲେ।

ଚତୁର୍ଥ ନରସିଂହଦେବ ଓ ଚତୁର୍ଥ ଭାନୁଦେବଙ୍କ ସମୟରେ ଓଡ଼ିଶାରେ ବହୁ ଅଳଙ୍କାର ଶାସ୍ତ୍ର, କାବ୍ୟ ଓ ନାଟକ ପଭୃତି ରଚିତ ହୋଇଥିଲା। ତନ୍ମଧ୍ୟରେ ବିଶ୍ୱନାଥ ଓ ଯୋଗୀଶ୍ୱର ପ୍ରଭୃତି କବି ଓ ପଣ୍ଡିତମାନଙ୍କର ପୁସ୍ତକ ପ୍ରଧାନ। କେବଳ ବିଶ୍ୱନାଥ କବିରାଜ ସାହିତ୍ୟ ଦର୍ପଣ ସମେତ ଆଠଖଣ୍ଡ ଭାଷା, ସାହିତ୍ୟ ଓ ନାଟକ ଗ୍ରନ୍ଥ ରଚନା କରିଥିବାର ଜଣାପଡ଼ିଛି (୨)।

---

(୧) Indian Inscription and the antiquity of Indian artificial poetry—Dr. Buhler Indian Antiquary Vol XLII, P. 1932.

(୨) ଓଡ଼ିଶା ଇତିହାସ—ମହତାବ, ପୃ. ୨୦୩ ଦ୍ରଷ୍ଟବ୍ୟ

ଓଡ଼ିଆ କାବ୍ୟଯୁଗର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ତାହାର ଶବ୍ଦାଲଙ୍କାର ଓ ଅର୍ଥାଲଙ୍କାରର ପ୍ରାଚୁର୍ଯ୍ୟ । ଭାରତର ଅନ୍ୟାନ୍ୟ କୌଣସି ପ୍ରାଦେଶିକ ରୀତି ସାହିତ୍ୟରେ ଏତେ ଆଲଙ୍କାରିକତା ଲକ୍ଷ୍ୟ କରାଯାଏ ନାହିଁ । ଖ୍ରୀ: ଅଷ୍ଟମ ଶତକର ଭୌମରାଜତ୍ୱକାଳର ଅନେକ ତାମ୍ର ଶାସନରେ ସୁନ୍ଦର ଶବ୍ଦାଲଙ୍କାରର ପ୍ରୟୋଗ ଦେଖାଯାଏ (୩) ।

ଏକ ସମୟରେ ଓଡ଼ିଶା ସଂସ୍କୃତ ଶିକ୍ଷାର ଏକ ପ୍ରଧାନ ପୀଠ ଥିଲା ଏବଂ ସେହି ସଂସ୍କୃତ ସାହିତ୍ୟର ଆଦର୍ଶରେ ହିଁ ଓଡ଼ିଆ କାବ୍ୟସାହିତ୍ୟ ପରିପୁଷ୍ଟି ଲାଭକଲା । ଭୌମବଂଶର ତାମ୍ରଶାସନରେ କିପରି ଆଲଙ୍କାରିକତା ପ୍ରକଟିତ, ତାହା ଏହି ଉଦାହରଣରୁ ଜଣା ପଡ଼ିଥାଏ ।

ଶ୍ଳେଷାଲଙ୍କାର ନିହିତ ପଦଟିର ଉଦାହରଣ ହେଉଛି :—

> "ଉଦ୍ୟାନେଷୁ ଶିଲୀମୁଖାବଳୀରବୋ ହାରେଷୁ ମୁକ୍ତା ସ୍ଥିତ—
> ର୍ଦୋଷାସଙ୍ଗ ରୁଚିସ୍ତୁଷାରକରଣେ ବକ୍ଷେଷୁ ସଦ୍ୱେଷିତା ।
> ରାହୌ ତୀକ୍ଷ୍ଣ କର ଗ୍ରହଃ କୁମତଷୁ ନାଶୋଦୟଃ କେବଳମ୍
> କାନ୍ତା କୁନ୍ତଳ ସନ୍ତତୌ କୁଟିଳତା ଯସ୍ୟାଃ ପ୍ରଭୁତ୍ୱେ ଭୁବ ॥" (୪)

ଶିଲୀମୁଖ—ଶର ଓ ଭ୍ରମର, ମୁକ୍ତ—ମୁକ୍ତା ଓ ଉନ୍ମୁକ୍ତା ରମଣୀ;
ଦୋଷାସଙ୍ଗ—ଦୋଷଯୁକ୍ତତା ଓ ପ୍ରଦୋଷଙ୍ଗୀ, ସଦ୍ୱେଷିତା—
ମେତ୍ରୀ ଓ ଯୁକ୍ତତର୍କ, ତୀକ୍ଷ୍ଣକର—ସୂର୍ଯ୍ୟ ଓ ଅତିରିକ୍ତ ଖଜଣା,
ନାଶ—ଭୟ ଓ ଚଞ୍ଚଳତା; କୁଟିଳତା—କୁଞ୍ଚିତତା ଓ କୁଟିମତା ।

ରୀତିଯୁଗ ସାହିତ୍ୟର ପ୍ରଧାନ ବୈଶିଷ୍ଟ୍ୟ ହେଉଛି (କ) ଅଳଙ୍କାର ପ୍ରିୟତା, (ଖ) ଶୃଙ୍ଗାରିକତା, (ଗ) ଶାସ୍ତ୍ରୀୟତା । ପ୍ରାଚୀନ ଓଡ଼ିଆ ରୀତିକାବ୍ୟ ତଥା ଭକ୍ତିକାବ୍ୟ ସମ୍ବନ୍ଧରେ ଏହି ତିନୋଟିଯାକ ବୈଶିଷ୍ଟ୍ୟ ବିଦ୍ୟମାନ । ଲାବଣ୍ୟବତୀ କାବ୍ୟରେ ସେ କାବ୍ୟର ଆଲଙ୍କାରିକତାକୁ ଲକ୍ଷ୍ୟ କରି ଲେଖିଅଛନ୍ତି :—

> "ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତରଇ
> ଏଣୁ କରିଥିବି ଅଳଙ୍କାର ଯୁକ୍ତ ହୋଇ ଯେ ।" (ଲା.ବ. ୧ମ ଛାନ୍ଦ)

ଭାରତର ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟରେ ରୀତିଯୁଗ :—

ହିନ୍ଦୀ ସାହିତ୍ୟରେ ରୀତିକାଳ ଖ୍ରୀ: ୧୬୪୮—ଖ୍ରୀ: ୧୮୪୩ ପର୍ଯ୍ୟନ୍ତ ବୋଲି ଧରାଯାଇଛି ଅର୍ଥାତ୍ ସାହାଜାହାନଙ୍କର ଶାସନର ସମାପ୍ତି ଓ ଔରଙ୍ଗଜେବଙ୍କ ଶାସନର

(୩) ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର, ପୃ. ୧୨୯
(୪) " " — " ପୃ. ୧୨୯

ଆରମ୍ଭଠାରୁ ପ୍ରଥମ ସ୍ୱାଧୀନତା ସଂଗ୍ରାମ ପର୍ଯ୍ୟନ୍ତ ରୀତିଯୁଗକୁ ବୁଝାଉଛୁ । ଓଡ଼ିଶାରେ ତାହା ଖ୍ରୀ. ୧୫୦୦ରୁ ଖ୍ରୀ. ୧୮୫୭ ପର୍ଯ୍ୟନ୍ତ ସମୟକୁ ନିଃସନ୍ଦେହରେ ରୀତିଯୁଗ ବୋଲି କହିବା ସମୀଚୀନ ।

ତେଲୁଗୁ ସାହିତ୍ୟରେ ରୀତିଯୁଗ (ଖ୍ରୀ. ୧୫୦୦—ଖ୍ରୀ. ୧୭୦୦) ସୃଷ୍ଟି ଅନବଦ୍ୟ । ଶ୍ରୀ ନାଥଙ୍କର 'ଶୃଙ୍ଗାର ନୈଷଧ' କୃଷ୍ଣଦେବରାୟଙ୍କର 'ଅମୁକ୍ତମଲ୍ୟଦା', 'ପ୍ରଭାବତୀ ପ୍ରଦ୍ୟୁମ୍ନମ୍' ପ୍ରଭୃତି ତେଲୁଗୁ ସାହିତ୍ୟରେ ପଞ୍ଚମହାକାବ୍ୟ ଭାବରେ ପରିଚିତ । ସୁରନ୍ନଙ୍କର 'ରାଘବ ପାଣ୍ଡବୀୟମ୍' ଏକ ଦ୍ୱର୍ଥୀ ମହାକାବ୍ୟ ଭାବରେ ସ୍ୱୀକୃତ । ଗୋଟିଏ କାବ୍ୟର ପାଠକକୁ ଦୁଇଟି ଅର୍ଥ ଗ୍ରହଣ କରିବାକୁ ପଡ଼ିଥାଏ । ଗୋଟିଏ ରାମାୟଣ ଓ ଅନ୍ୟଟି ମହାଭାରତର । ଏହି ସମୟ ମଧ୍ୟରେ ତାଞ୍ଜୋର, ମଦୁରାରେ ନାୟକ ରାଜାମାନଙ୍କର ପୃଷ୍ଠପୋଷକତାରେ ବହୁ ଶୃଙ୍ଗାର ବା ଆଦିରସାତ୍ମକ କାବ୍ୟ ଲେଖାହୋଇଥିବାର ଜଣାଯାଏ । ମାଲୟାଲମ୍ ସାହିତ୍ୟରେ ପ୍ରସିଦ୍ଧ ଆଲଙ୍କାରିକ କାବ୍ୟ 'କୃଷ୍ଣଗାଥା' 'ଭାରତଗାଥା' ତଥା ସେହି ସମୟରେ ଅନେକ ଚମ୍ପୂ ଓ ସନ୍ଦେଶ କାବ୍ୟ ରଚିତ ହୋଇଥିଲା । ମରାଠୀ ସାହିତ୍ୟର ମଧ୍ୟଯୁଗର ସାହିତ୍ୟରେ ସେତେ ଆଲଙ୍କାରିକତା ନ ଥିଲା; କିନ୍ତୁ କବିସମ୍ରାଟ ଉପେନ୍ଦ୍ରଙ୍କର 'ଚିତ୍ରକାବ୍ୟ ବନ୍ଦୋଦୟ' ପରି ମୋରପନ୍ତଙ୍କର 'ଚିତ୍ରବନ୍ଧ' ଏକ ବିଶିଷ୍ଟ ଆଲଙ୍କାରିକ କାବ୍ୟ । ଅସାମୀୟା, ବଙ୍ଗଳା ଓ ଗୁଜରାଟୀ ପ୍ରଭୃତି ସାହିତ୍ୟରେ ପ୍ରାଚୀନ କାବ୍ୟରେ ଆଲଙ୍କାରିକତା ଅପେକ୍ଷା ବିଶେଷ ଭାବରେ ରସବାଦର ପ୍ରଭାବ ପଡ଼ିଥିବାର ଲକ୍ଷ୍ୟ କରାଯାଏ । ମଧ୍ୟକାଳୀନ ବା ରୀତିକାଳୀନ ହିନ୍ଦୀସାହିତ୍ୟ ଏକ ସମୃଦ୍ଧ ସାହିତ୍ୟ । ହିନ୍ଦୀସାହିତ୍ୟରେ ସେନାପତିଙ୍କ ରଚିତ 'କବିତ୍ତରତ୍ନାକର'ରେ ଥିବା 'ଶ୍ଳେଷତରଙ୍ଗ', ଚିନ୍ତାମଣିଙ୍କର 'ଯମକଶତକ', ଆଚାର୍ଯ୍ୟ କେଶବଙ୍କର କାବ୍ୟର ଅନ୍ତର୍ଲାପିକା ତଥା ଏକାକ୍ଷରୀ ଦୋହା, ଦ୍ୱିଅକ୍ଷରୀ ଦୋହା ପ୍ରଭୃତିର ପ୍ରୟୋଗ ହିନ୍ଦୀକାବ୍ୟରେ ଆଲଙ୍କାରିକତାର ସୂଚନା ଦିଏ । କେଶବ ଦାସଙ୍କର କାବ୍ୟନିର୍ଣ୍ଣୟରେ 'ଗୋମୂତ୍ରିକା', ଅଶ୍ୱଗତି କମଳବନ୍ଧ, ଧନୁର୍ବନ୍ଧ, ମାଳାବନ୍ଧ, ପର୍ବତବନ୍ଧ ପ୍ରଭୃତି ଚିତ୍ରାଲଙ୍କାରର ଅଦ୍ଭୁତ ସମାବେଶ ଘଟିଛି । ମୈଥିଳୀ ସାହିତ୍ୟରେ ରୀତିଯୁଗର ଆଲଙ୍କାରିକତା ବିଦ୍ୟାପତିଙ୍କର ରଚନାରେ ସ୍ଥାନବିଶେଷରେ ରହିଛି । ମୈଥିଳୀକବି ବିଦ୍ୟାପତି (ଖ୍ରୀ. ୧୩୧୨—୧୪୪୮) ମଧ୍ୟରେ ଜୀବିତ ଥିଲେ । ବିଦ୍ୟାପତିଙ୍କ ରଚନାରେ ଶୃଙ୍ଗାରିକତା ବ୍ୟତୀତ ସ୍ଥଳବିଶେଷରେ ଭଙ୍ଗୀମୟ ଚିତ୍ରଶୈଳୀ ଦୃଷ୍ଟିଗୋଚର ହୋଇଥାଏ । ଯେପରି :—

> "ହରି ପତି-ହିତ-ରିପୁ-ନନ୍ଦନ-ବୈରି-ବାହନ ଲଳିତ ଗମନୀ
> ଦିତି-ନନ୍ଦନ ରିପୁ-ନନ୍ଦନ ନାଗରୀ ରୂପେ ସେ ଅଧିକ ରମଣୀ" ।୧।

"ହରି-ଶମ୍ଭୁ ଭୂପ ସୁତ ତନୟ୍-ଶମ୍ଭୁ" (୫)

ମୋଗଲ ଶାସନ ଓ ରୀତିଯୁଗ :—

ମୋଗଲ ଶାସନ ସମୟରେ ସାହିତ୍ୟ, ସଙ୍ଗୀତ ଓ କଳାର ସମୁଚିତ ବିକାଶ ଘଟିଥିଲା । ମୟୂର ସିଂହାସନ ଓ ତାଜମହଲ ପରି ବିଶାଳ କଳାର ବିଭବ କାହାର ସ୍ମୃତିପଥାରୂଢ଼ ନ ହୁଏ ? କଳାର ଉତ୍କର୍ଷ ଓ ବିଳାସ ନିମିତ୍ତ ମୋଗଲ ଶାସକର ଖଜଣାଖାନା ମଧ୍ୟ ଶୂନ୍ୟ ହୋଇଯାଇଥିଲା । ଏହା ସହିତ ସାମନ୍ତବାଦୀ ସମାଜର ଯୁଦ୍ଧ ଓ ବିପ୍ଳବର ଘନଘଟା ଲାଗି ରହିଥିଲା । ମୋଗଲଶକ୍ତି ବଳହୀନ ହେବା ଫଳରେ ପ୍ରାଦେଶିକ ଓ ସାମନ୍ତ ରାଜାମାନେ ସ୍ୱାଧୀନ ହେବାପାଇଁ ଚେଷ୍ଟାକଲେ । ଏହା ସହିତ ମୋଗଲଶାସନ ଦୁର୍ନୀତି ଓ ଅତ୍ୟାଚାରର ଆଉରଙ୍ଗଜେବଙ୍କ ସମୟରେ ଚୂଡାନ୍ତ ପରିଣତି ଲାଭକଲା । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ଆବିର୍ଭାବ ଆଉରଙ୍ଗଜେବଙ୍କ ରାଜତ୍ୱରେ ଘଟିଥିଲା । (୬) ମୋଗଲଶାସନ ସମୟରେ ଯେଉଁ କଳା ଓ ସ୍ଥାପତ୍ୟର ବିକାଶ ଘଟିଥିଲା, ତାହା ହିନ୍ଦୁ ତଥା ଫାରସୀ ଶୈଳୀର ସମ୍ୟକ ସହଯୋଗ ମାତ୍ର । ପ୍ରାଚୀନ ସାହିତ୍ୟର ନୀରସତ୍ୱ ତଥା ଭକ୍ତିଗାଥା ପରିବର୍ତ୍ତେ ସାହିତ୍ୟରେ ରସିକତା, ବିଳାସିତା ଓ ଆଳଙ୍କାରିକତା ବିଶେଷ ଭାବରେ ଦେଖାଦେଲା । ଏ ପ୍ରକାର ରୀତିଯୁଗର ବିକାଶ ହିନ୍ଦୁ ତଥା ତତ୍କାଳୀନ ସଂସ୍କୃତିର ଅପ୍ରତିହତ ପ୍ରଭାବରେ ପରିପୁଷ୍ଟ କହିବା ବାହୁଲ୍ୟ ହେବ ।

## ଓଡ଼ିଆ ରୀତିସାହିତ୍ୟର ପୂର୍ବାଭାସ :—

ଓଡ଼ିଆ ରୀତିସାହିତ୍ୟ ଆଲୋଚନାରେ ଜଣାଯାଏ ଯେ ଉପେନ୍ଦ୍ରଭଞ୍ଜଙ୍କ ଆବିର୍ଭାବ ପୂର୍ବରୁ ଅର୍ଜୁନ ଦାସଙ୍କ 'ରାମବିଭା', ଶିଶୁଶଙ୍କରଙ୍କର 'ଉଷାଭିଳାଷ', ଭକ୍ତକବି ଜଗନ୍ନାଥ ଦାସଙ୍କର 'ଉଷାପରିଣୟ' (ଅପ୍ରକାଶିତ), ଦେବଦୁର୍ଲଭଙ୍କ 'ରହସ୍ୟ ମଞ୍ଜରୀ', କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା', ଗୁନ୍ଦକବିଙ୍କ 'ଗୋପୀଚନ୍ଦନ' (ଖ୍ରୀ ୧୬ଶ ଶତାବ୍ଦୀ), ବିଷ୍ଣୁଦାସଙ୍କ 'ପ୍ରେମଲୋଚନା', ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' ଓ ଉପେନ୍ଦ୍ରଙ୍କ ପ୍ରପିତାମହ ଧନଞ୍ଜୟଙ୍କର 'ରଘୁନାଥବିଳାସ' ଓ 'ରତ୍ନମଞ୍ଜରୀ' ପ୍ରଭୃତି କାବ୍ୟ ରଚିତ ହୋଇଥିଲା । ପ୍ରାଥମିକ ଓଡ଼ିଆ ରୀତିସାହିତ୍ୟ

---

(୫) ମତ୍ଲିଖିତ 'ମୈଥିଳୀକବି ବିଦ୍ୟାପତି ସନ୍ଦର୍ଭ' ଦ୍ରଷ୍ଟବ୍ୟ । 'ଝଙ୍କାର' ୯ମ ବର୍ଷ ୭ମ ସଂଖ୍ୟା ପୃ. ୭୦୯ ଠାରୁ ।

(୬) J. A. S. ., vol. LXVII, Part 1898ର ପୃ. ୩୮୦ ଠାରୁ 'ମୟୂରଭଞ୍ଜ ରାଜବଂଶାବଳୀ' ଦ୍ରଷ୍ଟବ୍ୟ ।

ବା କାବ୍ୟସାହିତ୍ୟର ଅନଳଂକୃତ ଭିତ୍ତିଭୂମି ଉପରେ ଉପେନ୍ଦ୍ର ସୂଚୀଶିଳ୍ପ ବିରଚିତ କାବ୍ୟ-କୋଣାର୍କ ନିର୍ମାଣ କରି ତନ୍ମଧ୍ୟରେ ଆଲଙ୍କାରିକତାର ଚୂଡ଼ାନ୍ତ ବିକାଶ ଆନୟନ କଲେ ।

## ଉପସଂହାର :—

ଭାରତୀୟ ରୀତିଯୁଗ ସାହିତ୍ୟର ତୁଳନାତ୍ମକ ପର୍ଯ୍ୟାଲୋଚନାରୁ ଜଣାପଡ଼େ ଯେ ପ୍ରତ୍ୟେକ ପ୍ରାଦେଶିକ ସାହିତ୍ୟରେ ରୀତିସାହିତ୍ୟର ଧାରା ରହିଥିଲା; କିନ୍ତୁ ଓଡ଼ିଆ ରୀତି ସାହିତ୍ୟ ଯେପରି ରୀତିସାହିତ୍ୟର ରୀତି ପଦେ ପଦେ ଗ୍ରହଣ କରିଛି, ଭାରତର ଅନ୍ୟ କୌଣସି ସାହିତ୍ୟରେ ତାହା ସେତେ ପରିମାଣରେ ପରିଲକ୍ଷିତ ହୁଏ ନାହିଁ ।

## ରୀତିଯୁଗ ସାହିତ୍ୟର ପ୍ରଧାନ ବୈଶିଷ୍ଟ୍ୟ—

(କ) ଆଲୋଚକମାନଙ୍କ ମତରେ ରୀତିଯୁଗ "ବିଳାସିତା ଓ ସମୃଦ୍ଧିର କାଳ ।" ରୀତି-ଯୁଗର ପୂର୍ବବର୍ତ୍ତୀ ଯୁଗ ଭକ୍ତିଯୁଗର କବିମାନଙ୍କର ଥିଲା ବୈରାଗ୍ୟପୂର୍ଣ୍ଣ ସାଧନା; କିନ୍ତୁ ରୀତିଯୁଗର କବିମାନେ ହେଲେ ଭୋଗ ଓ ବିଳାସର ସାଧକ । ଏହି ସାହିତ୍ୟକୁ ଅନ୍ୟାର୍ଥରେ—'ସାମନ୍ତବାଦୀ' ସାହିତ୍ୟ ବୋଲି କୁହାଯାଇପାରେ । ରାଜରାଜୁଡ଼ା, ଜମିଦାର—ଯେଉଁମାନେ କି ରାଜ୍ୟର ସାମନ୍ତଗୋଷ୍ଠୀ ଭାବରେ ପରିଚିତ, ସେମାନଙ୍କ ଜୀବନରେ ଭୋଗବିଳାସର ଚିତ୍ର ଏହି ରୀତିକାବ୍ୟରେ ବିଶେଷ ଭାବରେ ଲକ୍ଷ୍ୟ କରାଯାଇଥାଏ । ଏହି ଯୁଗରେ ଲେଖାଯାଇଥିବା 'ଭକ୍ତି-କାବ୍ୟ'ରେ ମଧ୍ୟ ସେହି ସାମନ୍ତବାଦୀ ଛାପ ପୂରି ରହିଛି । ସବୁ ସମୟରେ ଶ୍ରେଣୀର ତଥାକଥିତ ଉଚ୍ଚସ୍ତରର ଲୋକେ କଳା ଓ ସାହିତ୍ୟର ରକ୍ଷକ ହୋଇ ରହିଆସି-ଛନ୍ତି । ତେଣୁ କେତେକ ଆଲୋଚକ ଏହି ସାହିତ୍ୟକୁ 'ରାଜାଶ୍ରୟ ସାହିତ୍ୟ' ବା 'ଦରବାରୀ ସାହିତ୍ୟ' ବୋଲି ଆଖ୍ୟାତ କରିଥାନ୍ତି ।

(ଖ) ରୀତିଯୁଗ ସାହିତ୍ୟର ଧାରାରେ ଐହିକ ଜୀବନର ଭୋଗବିଳାସ ନିମିତ୍ତ ତୃଷ୍ଣା ପରିଲକ୍ଷିତ ହୋଇଥାଏ । ଏହାର ଠିକ୍ ବିପରୀତ ଧାରା ଭକ୍ତିଯୁଗର ସାହିତ୍ୟରେ ଦେଖିବାକୁ ମିଳିଥାଏ ଓ ତାହା ହେଉଛି ଜୀବନର କ୍ଷଣଭଙ୍ଗୁରତା ବା ଅସ୍ଥାୟିତ୍ୱ ।

(ଗ) ରୀତିଯୁଗର ସାହିତ୍ୟରେ ଶୃଙ୍ଗାର ବା ଆଦିରସର ଅତ୍ୟଧିକ ଚର୍ଚ୍ଚା ରହିଅଛି । ସଂସ୍କୃତ କାବ୍ୟସାହିତ୍ୟର ପ୍ରଭାବ ଏଥିରେ ସ୍ପଷ୍ଟ । "ଶୃଙ୍ଗାରୀ ଚେତ୍ କବିଃ"—ସରସ୍ୱତୀ କଣ୍ଠାଭରଣରେ ଭୋଜରାଜଙ୍କର ଏହି ଉକ୍ତି ଏହି ଯୁଗର କବିମାନଙ୍କର କାବ୍ୟାଦର୍ଶ ଥିଲା ପରି ମନେ ହୋଇଥାଏ । ସଂସ୍କୃତ ସାହିତ୍ୟର ସୁବିଶାଳ

ପରମ୍ପରା ଉପରେ ଓଡ଼ିଆ ରୀତିକାବ୍ୟ ଯେ ଆଶ୍ରୟ କରି ରହିଛି, କହିବା ବାହୁଲ୍ୟ ହେବ ।

(ଘ) ମୁଖ୍ୟତଃ ଏହି ଯୁଗର ସାହିତ୍ୟ ହିନ୍ଦୁ ତଥା ମୁସଲମାନ ରାଜତ୍ୱରେ ରାଜା ବା ଦରବାରକୁ ଆଶ୍ରୟ କରିଥିଲା । ଏହି ଲକ୍ଷଣ କେବଳ ଓଡ଼ିଆ ରୀତିଯୁଗ ସାହିତ୍ୟରେ ନୁହେଁ, ତାହା ହିନ୍ଦୀ, ବଙ୍ଗଳା, ରାଜପୁତାନା ପ୍ରଭୃତି ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଦେଖା ଦେଇଛି । ଆକବର ପ୍ରଥମେ ହିନ୍ଦୀ କବିମାନଙ୍କୁ କାବ୍ୟ ରଚନା କରିବା ନିମିତ୍ତ ଉତ୍ସାହ ପ୍ରଦାନ କରିଥିଲେ । ଓଡ଼ିଶାରେ କବିସୂର୍ଯ୍ୟ, ବ୍ରଜନାଥ, ଯଦୁମଣି ପ୍ରଭୃତି କବିଙ୍କର ଜୀବନରେ ଏହି ବୈଶିଷ୍ଟ୍ୟ ପ୍ରତିବିମ୍ବିତ ହୋଇଅଛି ।

(ଙ) ରୀତିଯୁଗ ସାହିତ୍ୟର ସୃଷ୍ଟି ନିମିତ୍ତ ତତ୍କାଳୀନ ରାଜନୀତିକ ଓ ସାମାଜିକ ପରିସ୍ଥିତିର ସାହାଯ୍ୟ ମଧ୍ୟ କିଛି କମ୍ ନୁହେଁ । ମୋଗଲ ସାମ୍ରାଜ୍ୟ ତଥା ତାହାର ଅନୁକରଣରେ ହିନ୍ଦୁ ରାଜନ୍ୟବର୍ଗଙ୍କର ସୁମହାନ ବୈଭବ ଓ ବିଳାସିତ କାବ୍ୟଯୁଗର କାବ୍ୟ ସମୂହକୁ ଛନ୍ଦୋମୟ, ସଙ୍ଗୀତମୟ ଓ ଅଦ୍ୱିତୀୟ କଳା କାରିଗରିର ସାମଗ୍ରୀ କରି ଗଢ଼ିବା ପାଇଁ ସମର୍ଥ ହୋଇଛି । କବିମାନେ ସେମାନଙ୍କର ଆଶ୍ରୟଦାତାଙ୍କର ଅଭିରୁଚି ଅନୁଯାୟୀ କାବ୍ୟ ଲେଖିବାରେ କବିର ସ୍ୱାତନ୍ତ୍ର୍ୟ ମଧ୍ୟ ଅନେକାଂଶରେ ପରାହତ ହୋଇଛି ।

(ଚ) ରୀତିସାହିତ୍ୟରେ ପୂର୍ବଯୁଗର ଧାର୍ମିକ ଧାରା ବା ଧର୍ମସାଧନା ସାହିତ୍ୟରୁ ଏକପ୍ରକାର ବିଦାୟ ନେଲା । ଏହି ସାହିତ୍ୟରୁ କଠିନ ଆଧ୍ୟାତ୍ମିକତା ବା ଦାର୍ଶନିକତାର ବିଶ୍ଲେଷଣ ପରିବର୍ତ୍ତେ ବିଶେଷ ଭାବରେ ସ୍ଥାନଲାଭ କଲା କାଳ୍ପନିକତା; ଯେଉଁଥିରେ କଳା ଓ ସୌନ୍ଦର୍ଯ୍ୟର ଚରମ ବିକାଶ ଘଟିଲା । ପଞ୍ଚସଖା ସାହିତ୍ୟର ନିଗୂଢ଼ ଅତୀନ୍ଦ୍ରିୟ 'ବ୍ରହ୍ମଦର୍ଶନ', କାୟସାଧନା ଓ ହଠଯୋଗ ପ୍ରଭୃତି ପରିବର୍ତ୍ତେ ଇନ୍ଦ୍ରିୟ ପରିତୃପ୍ତି ନିମିତ୍ତ ନାରୀର ଅପରୂପ ନଖଶିଖ ବର୍ଣ୍ଣନ, ସମ୍ଭୋଗ-ଶୃଙ୍ଗାର ଓ ଚଉଷଠି ବନ୍ଧ ସାଧନା ଓ ମୁଷ୍ଟିଯୋଗ ପ୍ରଭୃତି ରୂପାୟିତ ହେଲା ।

(ଛ) ଓଡ଼ିଆ ଭକ୍ତିଯୁଗର ସାହିତ୍ୟରେ ବା ସନ୍ଥ ସାହିତ୍ୟରେ ବିଭିନ୍ନ ଗୀତା, ସଂହିତାରେ ତ ନାରୀର ପ୍ରଶ୍ନ ନାହିଁ ଓ ପୁରାଣ ସାହିତ୍ୟରେ ନାରୀର ଯେଉଁ ସୁମହତ୍ ଆଦର୍ଶ ଥିଲା, ତତ୍ପରିବର୍ତ୍ତେ ଓଡ଼ିଆ କାବ୍ୟଯୁଗରେ ନାରୀ ହେଲା ପରିକଳ୍ପନାର ଅପରୂପ କୋଣାର୍କ, ପୁଣି ହେଲା ପର୍ଯ୍ୟଙ୍କଶାୟିନୀ, ଉପବନ-ବିହାରିଣୀ ଭୋଗବିଳାସର ସାମଗ୍ରୀ ।

ରୀତିଯୁଗ କାବ୍ୟର ନାୟିକାଚରିତ୍ରରେ ଆମେ ନାରୀସୁଲଭ ସ୍ୱର୍ଗୀୟ ଚରିତ୍ରର ସୁମହତ୍ ଚିତ୍ର ଦେଖିବାକୁ ପାଉଁ ନା—ରୀତିକବି ସବୁ ଭୁଲିଯାଇ ନାରୀକୁ

'ସୁନ୍ଦରୀ ସାର' ରୂପେ ତାର କଳ୍ପନା ତୁଳରେ ଚିତ୍ରଣ କରିବାକୁ ଚେଷ୍ଟା କରିଛୁ । 'Art for arts sake'—କଳା ପାଇଁ କଳାର ପ୍ରୟୋଜନ— ଏହି ଉକ୍ତି ହିଁ ରୀତିକାବ୍ୟରେ ଜୀବନ୍ତ ହୋଇ ଉଠିଛି ।

## ରୀତିଯୁଗ ଓ ଅଭିମନ୍ୟୁ —

ରୀତିଯୁଗର ଅଧିକାଂଶ ବୈଶିଷ୍ଟ୍ୟ ଅଭିମନ୍ୟୁଙ୍କ ଲେଖାରେ ପ୍ରତିଫଳିତ ହୋଇଥିବାର ଜଣାଯାଏ । ଶ୍ରୀରାଧା ଓ ଶ୍ରୀକୃଷ୍ଣ ଚରିତ୍ରରେ କବି ସ୍ୱର୍ଗୀୟ ପ୍ରେମ ବା ଅପ୍ରାକୃତ ପ୍ରେମର ଆକ୍ଷେପ କରିଥିଲେ ହେଁ ରାଧା ଏବଂ କୃଷ୍ଣ ଚରିତ୍ରରେ ମାନବତ୍ୱର ଛବି ପଦେ ପଦେ ବିଦ୍ୟମାନ । ସମ୍ଭୋଗ ତଥା ବିପ୍ରଲମ୍ଭ ଶୃଙ୍ଗାର ରସର ବର୍ଣ୍ଣନାରେ ସେ ଅତି ସାଧାରଣ ମନୁଷ୍ୟର ସମସ୍ତ ଆଚାର-ବ୍ୟବହାର ରୂପାୟିତ କରି ରୀତିକାବ୍ୟର ଶୃଙ୍ଗାରିକତାକୁ କାବ୍ୟରେ ଆମୂଳଚୂଳ ଚିତ୍ରଣ କରିଅଛନ୍ତି । ଅଭିମନ୍ୟୁଙ୍କର ଏହି ରୀତି ବହୁ ପ୍ରାଚୀନ ପରମ୍ପରା ଉପରେ ନିର୍ଭର କରିଛି ।

ରସ, ରୀତି, ଧ୍ୱନି ତଥା ଆଲଙ୍କାରିକତା ଯାହା ବିଦଗ୍ଧ ଚିନ୍ତାମଣି କାବ୍ୟର ଭୂଷଣ ହୋଇଛି ତାହା, ଦୀନକୃଷ୍ଣ, ଉପେନ୍ଦ୍ର ପ୍ରଭୃତି ରୀତିକବିଙ୍କର ପଦାଙ୍କ ଅନୁସରଣ ମାତ୍ର । ରୀତିଯୁଗର ଆଲଙ୍କାରିକ ଆଟୋପରେ ଅଭିମନ୍ୟୁ ସ୍ଥଳବିଶେଷରେ ଦୀନକୃଷ୍ଣ ଓ ଉପେନ୍ଦ୍ରଙ୍କୁ ବଳିଯାଇଛନ୍ତି । କବି ଅନେକ ଛାନ୍ଦରେ ଆଲଙ୍କାରିକ ରୀତି ଗ୍ରହଣ କରିବା ବିଷୟ ସ୍ପଷ୍ଟଭାବରେ ଉଲ୍ଲେଖ ମଧ୍ୟ କରିଅଛନ୍ତି, ଯେପରି—

"ରାଧାଗୋବିନ୍ଦଙ୍କ ଭାବ ମନେ କରି ଧ୍ୟାନ,
ଦୀନ ଅଭିମନ୍ୟୁ ସାମନ୍ତ କି ସବୁ ଦିନ ।"
ଦିବ୍ୟ ସୂକ୍ଷ୍ମ ଅଳଂକାର । ଏ ଛାନ୍ଦରେ କିଛି ଅଛି ସୁଜନେ ବିଚାର ।
(ଛା. ୧୭।୨୫)

× × × ×

"କବିବଚନ ଅଳଂକୃତ ହେଉ
ଆତ୍ମ ନେତ୍ର ତାପ ପାପ ପଳାଉ ।" (୫।୧୪)

× × × ×

"କହିଲେ ସଖୀ ମନ ଜାଣି ଆଳୀ ।
ସ୍ୱଚ୍ଛିରେ ତୁଚ୍ଛ ଆଦରଣ ଭାଳି ।
ଅଳଂକାର ଅଳଂକାରିଦ ବିଧି ।" ଇତ୍ୟାଦି । (୫।୫୭)

× × × ×

"ବିଶେଷ ଅଳଂକାର ଅଳଂକାର ।
ବଚନ ଲବଣୀ ଜନମସ୍ଥଳ ।" (୧୭।୯୩)

× × × ×

"ଆତୁରେ ଚଞ୍ଚଳମତ ମଦାଳସେ ମନ୍ଦଗତ
ହେଲ ମ୍ଳାନ ଅଳଂକାର ଭୂଷଣ ଛବ ।" (୧୧।୨୭)

× × × ×

"ସୁଯୋଗରେ ଭୋଗ ହେବ ନାଗରମଣିକ ।
ଅଳଂକାରରେ ନପୁଂ ବୋଲ ନ ଜାଣ କ ଗୋ ।" (୮୫।୫୦)

ଇତ୍ୟାଦ ।

ଏଥିରୁ ପ୍ରତୀତ ହୁଏ ଯେ କବବରଙ୍କର ସଂସ୍କୃତ ଅଳଂକାରଶାସ୍ତ୍ର ବଶେଷ ଭାବରେ "ସାହିତ୍ୟ ଦର୍ପଣ" ତଥା ଭନ୍ତୀୟ ଅଳଂକାର ଶାସ୍ତ୍ରରେ ଗଭୀର ବ୍ୟୁତ୍ପତ୍ତି ଥିଲା; ତେଣୁ ସେ ବଦଗ୍ଧ ଚନ୍ତାମଣି କାବ୍ୟନାୟିକାକୁ କେବଳ ଯେ ଅଳଂକୃତ କରଛନ୍ତି ତା ନୁହେଁ, ବରଂ ଅଳଂକାରରେ ଭାରାକ୍ରାନ୍ତ କରଅଛନ୍ତି । ଏ ଦୋଷ କେବଳ ଅଭମନ୍ୟୁଙ୍କ କାବ୍ୟରେ ଯେ ପରଦୃଷ୍ଟ ହୁଏ ତାହା ନୁହେଁ—ଏହା ତକାଳୀନ ରୀତକାବ୍ୟରେ ସବୁଠ ପରଲକ୍ଷିତ ହୋଇଥାଏ । ମୋଗଲ ଶାସନକାଳୀନ ବଳାସବ୍ୟସନର ପରୋକ୍ଷ ପ୍ରଭାବ ରୀତକାବ୍ୟରେ ପଡ଼ିଥିବାର ଆଲୋଚକମାନେ କହିଥାଆନ୍ତି ଓ ତାହା ମଧ୍ୟ ଅଭମନ୍ୟୁଙ୍କ କାବ୍ୟ ସମୂହ ତଥା ବଦଗ୍ଧ ଚନ୍ତାମଣିରେ ଯେ ପଡ଼ିଛ, କହିବା ଭୁଲ ହେବ ନାହିଁ ।

## ବଦଗ୍ଧ ଚନ୍ତାମଣି ଉପରେ ଉପେନ୍ଦ୍ରଭଞ୍ଜ ସାହିତ୍ୟର ପ୍ରଭାବ :

ରୀତଯୁଗର ଶ୍ରେଷ୍ଠତମ ତଥା ଯୁଗସ୍ରଷ୍ଟା କବ ଉପେନ୍ଦ୍ରଙ୍କ ସାହିତ୍ୟର ପ୍ରଭାବ ବଦଗ୍ଧ ଚନ୍ତାମଣି କାବ୍ୟର ବଭନ୍ନ ସ୍ଥାନକୁ ପ୍ରଭାବତ କରଛ । ଏ ପ୍ରଭାବ ଏପର ସ୍ପଷ୍ଟ ଯେ କେହ ପାଠକ ହୁଏତ ବଦଗ୍ଧ ଚନ୍ତାମଣିର କେତେକ ପ୍ରଭାବଯୁକ୍ତ ପଦକୁ ଭଞ୍ଜଙ୍କର ରଚନା ବୋଲ ମନେକର ପାରନ୍ତି ।

ମନମୋହନ ଚକ୍ରବର୍ତ୍ତୀ ତାଙ୍କର 'ଓଡ଼ିଆ ଭାଷା ଓ ସାହିତ୍ୟ' ସମ୍ବନ୍ଧୀୟ ସନ୍ଦର୍ଭରେ (J.A.S.B., Vol LXVI. P. I. No. 4 1897. P. 376) ବଦଗ୍ଧ ଚନ୍ତାମଣିର ଆଳଂକାରକତା ସମ୍ବନ୍ଧରେ ଲେଖିଛନ୍ତି ଯେ ପାଣ୍ଡିତ୍ୟ ଓ ବଦ୍‌ବତ୍ତାରେ ସେ ନଶ୍ଚିତ ଭାବରେ ଉପେନ୍ଦ୍ରଙ୍କଠାରୁ ନମ୍ନରେ; କନ୍ତୁ ବଦଗ୍ଧ ଚନ୍ତାମଣି ପ୍ରସଙ୍ଗରେ ବଚାର କଲେ ଜଣାଯାଏ ଯେ ଆଳଂକାରକତା ଓ ଚନ୍ତାଗର୍ଭକ ରଚନାରେ କୌଣସି ଓଡ଼ିଆ କାବ୍ୟ ତାହାର ସମକକ୍ଷ ହେବନାହିଁ ।

'In learning and comprehensiveness he is undoubtedly inferior to U endra, but it may be said for idagdha Chintamo i that no single Oriya poem contains so many examples of rhetorical skill or abstract poetry as this work does."

ଅନ୍ୟ ଦିଗରେ ପରବର୍ତ୍ତୀ ଆଲୋଚକ ବିଜୟଚନ୍ଦ୍ର ମଜୁମଦାର ଲେଖିଛନ୍ତି ଯେ କବିଙ୍କର ସୁଲକ୍ଷଣା, ରସବତୀ ଓ ପ୍ରେମକଳା ପ୍ରଭୃତି କାବ୍ୟ ଉପେନ୍ଦ୍ରଙ୍କର କାଳ୍ପନିକ କାବ୍ୟର ଅନୁକରଣରେ ରଚିତ ହୋଇଛି । ବିଦଗ୍ଧ ଚିନ୍ତାମଣି ବିଷୟ ବିଚାର କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ ସେ ଉପେନ୍ଦ୍ରଙ୍କ ମତ ତାଙ୍କ କାବ୍ୟକୁ ଆଲଂକାରିକ ବେଶଭୂଷାରେ ମଣ୍ଡନ କରିବା ପାଇଁ ଚେଷ୍ଟା କରିଛନ୍ତି; କିନ୍ତୁ ତାଙ୍କ ସରଳ ରଚନାଶୈଳୀର ସ୍ୱାଭାବିକ ପ୍ରବାହ ଯୁବୋକ୍ତି ଆଲଂକାରିକ ରଚନା ଅପେକ୍ଷା ଅଧିକ ସରସ ଓ ପ୍ରାଣବନ୍ତ ହୋଇଛି । ଏହି କାବ୍ୟର କେତେକ ଛାନ୍ଦରେ ପ୍ରେମ ଓ ଭକ୍ତି ନେଇ ଯେଉଁ ଧାର୍ମିକ ଭାବଧାରା ବର୍ଣ୍ଣିତ ହୋଇଛି; ତାହା ସରସ, ମନୋମୁଗ୍ଧକର ହୋଇ ଉଠିଛି । ମଜୁମଦାରଙ୍କର ଏହି ଉକ୍ତିସମୂହ ଉଦ୍ଧାର କରିବାରେ କୌଣସି ଅପ୍ରାସଙ୍ଗିକତା ନାହିଁ ବୋଲି ମନେହୁଏ ।

"Of the early poetical work of the author, Sulaksana, Rasavati and Premakala are love stories composed in imitation of Upendra Bhanja's romances; though they are not good literary production, they shadow forth the powers which the poet displays in his Bidagdha Chintamoni. Bidagdha Chintamoni is really the work which will perpetuate the literary fame of the author. No doubt, like Upendra Bhanja the poet was devoted to decorate his effusions with various classes of alternative formations, but the natural and easy flow of his simple language has made his writings attractive. In some Chhandas of the Bidagdha Chintamoni, the religious doctrine of love (Prema and Bhakti) have been delineated with the hand of a genuine poet in an interesting and appealing form."

(Typical Selections from Oriya literature—B. C. Mazumdar, Int. PXXVII).

ବର୍ତ୍ତମାନ ତୁଳନାମୂଳକ ଭାବରେ ଦେଖାଯାଉ ଯେ କିପରି ଅଭିମନ୍ୟୁ କବିଙ୍କୁ ଉପେନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ବିଶେଷ ଭାବରେ ଲାବଣ୍ୟବତୀର ଅନେକ ଛାନ୍ଦର ପ୍ରଭାବ ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର କେତେକ ଛାନ୍ଦକୁ

ପ୍ରଭାବିତ କରିଛୁ । ଏଥିମଧ୍ୟରୁ ଲାବଣ୍ୟବତୀ କାବ୍ୟରେ ଲାବଣ୍ୟବତୀର ସ୍ୱପ୍ନଦର୍ଶନଛାନ୍ଦ ବିଶେଷ ଉଲ୍ଲେଖଯୋଗ୍ୟ । ବିଦଗ୍ଧ ଚିନ୍ତାମଣିରେ ଶ୍ରୀରାଧାଙ୍କ ସ୍ୱପ୍ନଦର୍ଶନ ଛାନ୍ଦ ଲାବଣ୍ୟବତୀର ଅନୁରୂପ ହୋଇ ପଡ଼ିଛି । ଉଭୟ କାବ୍ୟରୁ ଏଠାରେ କେତେକ ଉଦାହରଣ ପ୍ରଦତ୍ତ ହେଲା—

ଲାବଣ୍ୟବତୀ— "ସବର୍ଣ୍ଣାଦି ଶବଦ ଶୁଣି
ସାଧୁ ଶୁକ ଅଇଲେ କି ହୁଅଇ ଗୁଣି ।" (୧୦-୪)

ବିଦଗ୍ଧ ଚିନ୍ତାମଣି— ଦୂପୂର୍ବାଦି ଶବଦ ଶୁଣି
ଦୂତୀ ଅଇଲା କି ଭ୍ରମେ ହୁଅଇ ଗୁଣି । (୩୦-୧୬)

ଲାବଣ୍ୟବତୀ—'ଅଣିମାଦି ସୁନ୍ଦରୀ ଶୋଇଅଛି ଅଣି ହୋଇ
ପଲଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ଯେସାଣ ରଜତ ବାଡ଼େ କନକଲତା କି ଜଡ଼େ
ବିଶଦ ଘନରେ କି ସେ ଚପଳା ପ୍ରଭା
ବାମକର କପୋଳ ତଳା ।
କେନ୍ଦପଲ୍ଲବେ ଥୁଆ କି ଫୁଲ୍ଲ କମଳ ।" (୧୧-୧୬)

ବିଦଗ୍ଧ ଚିନ୍ତାମଣି—"ବିଶ୍ୱଚିତ୍ତ ବିଶ ପାଇଁ ପ୍ରୀତି ମୂର୍ତ୍ତିବନ୍ତ ହୋଇ
ଅଣିମାର ଦେବ ଅଣିଆଇ ଶୋଇଛି
ପାଣିଦେବା ଗଣ୍ଡସ୍ଥଳେ ଶଶୀ କୋକନଦ କୋଳେ
ପଦ୍ମଦ୍ୱାର ଶୋଭାକୁ ହସି ଦେଉଛି ।
କୃଷ୍ଣବର୍ଣ୍ଣ ଶେଯେ ନୟନ ।
ସଜଳଘନେ ଛକିତ ବିଦ୍ୟୁ ସମାନ ।" (୩୦-୧୯)

ଲାବଣ୍ୟବତୀ— "ଦମ୍ଭ ଉଦଧିମନ୍ଥନ ଅଚଳସ୍ତନ ଚନ୍ଦନ
ଲେପନ ହୋଇ ଶୋଭନ ବହନ ଗଲା
ସୁଧା କୋଷ କେନ ଆଣି ଢାଙ୍କି କି କାଚ ଢାଙ୍କୁଣୀ
ଭଲ ଦମ୍ପିତ ଭୋଗକୁ ରଖିଛି ବାଳୀ
ସ୍ଫଟିକ ପ୍ରାସାଦ ସଦୃଶୀ
ନବଘନ କାନ୍ତି ଅଛି ତହିଁକି ମିଶି ।" (୧୧-୬୦)

ବିଦଗ୍ଧ ଚିନ୍ତାମଣି—"ନୀଳଚେଲ କୁଚେଲାଗି ଦିଏ ଦୃଷ୍ଟି ମାନ ଭଙ୍ଗି
ହେମଗିରି ଗିଳିଅଛି କି କାଳାଘନ
ମଦନ ମାଦକ ସ୍ଥଳ ବିଶ୍ୱ ବିମୋହନ ଫଳ
ଭଲ ବିହି ଗୋଡ଼ାଇଛି ଘେନୁଛି ମନ ।
କାଳୀ ଅଙ୍କେ ଗୋପ୍ୟକି ଶମ୍ଭୁ ।
ମଦନ କି ଢେରିଅଛି ସୁବର୍ଣ୍ଣ ତମ୍ବୁ ।" (୩୦-୩୬)

ଲାବଣ୍ୟବତୀ— "ଭଜୁ ନ ଭଜୁ ବାନ୍ଧବୀ    ଆଗ ମୁଁ ନିଦ୍ରା ଭାଙ୍ଗିବି
ତନୁ ହେଲେ ଛୁଇଁଥିବି ଏ ବଡ଼ ଲଭ ।
ଯେ ପାରେ ବାଳା ମନାଇ    ନିଶ୍ଚେ ମଣେ ଇନ୍ଦ୍ର ସେହି
ମନରେ ଭାବନା କରି ପରମ ଶୁଭ
ଜାନୁ ଧରି ଦେଲି ଟଳୁଇ ।
ପୁଂସ କରି ଲଗି ନିଦ୍ରା ବିନାଶ ହୋଇ ।" (୧୧-୨୫)

ବିଦଗ୍ଧ ଚିନ୍ତାମଣି—"ଭାଗ୍ୟ କଳ୍ପତରୁ ଫଳ    କେତେ ମାଦକ ଏ ଫଳ
ପାଇ ନିଷ୍ଫଳ ହେଲେ କି ପ୍ରାଣ ରହିବ ।
କରୁ ନ କରୁ ସ୍ୱୀକାର    ଛୁଇଁଥିବି କଳେବର
ଦୁଇ ମତେ ଅମୃତ ଦାୟୀ ତ ହୋଇବ ।
ଏତେ ଭାଳି ଆତୁର ହୋଇ ।
ଶିରୁ ଗିରୁ ଉରୁ ଧରି ଦେଲେ ଟଳୁଇ ।" (୩୦-୩୬)

ଲାବଣ୍ୟବତୀ— ଉଠି ଭାଙ୍ଗନ୍ତେ ଅଳସ    କି ଶୋଭା କୁଚ-କଳସ
ଟେକି ହୋଏ କି ମେରୁକୁ ଜିଣିବା ଗର୍ବେ
ଊର୍ଦ୍ଧ୍ୱେ ଛନ୍ଦି କରି ବେନି    ଶୋଭା ଲପନକୁ ଘେନି
ଚନ୍ଦ୍ରେ କି ବିଦ୍ୟୁ ପରିଧି ହୋଇଲା ଏବେ ।
ମୁଖ ଜୃମ୍ଭାବଶେ ରାଜିତ
ଦରବିକଶିତ କୋକନଦ ଯେମନ୍ତ ।" (୧୧-୨୬)

ବିଦଗ୍ଧ ଚିନ୍ତାମଣି—"ନିଦ୍ରା ମୁଦ୍ରା ଗଲା ଭାଙ୍ଗି    ଅଳସ ଭାଙ୍ଗିବା ଭଙ୍ଗୀ
କୁଚ ମଙ୍ଗଳ କଳସ ଦେଖାଇଲା କି ।
ଊର୍ଦ୍ଧ୍ୱ କରି ଛନ୍ଦୁ ପାଣି    କି ଶୋଭା ଶ୍ରୀମୁଖ ଆଣି
ହେମ ପ୍ରଭାରେ ଚନ୍ଦ୍ରମା ବନ୍ଦେ କଲା କି ।
ଜୃମ୍ଭାକାଳେ ତୁଣ୍ଡ ମାଧୁରୀ ।
ରଙ୍ଗ ସମ୍ପୁଟକ ଅର୍ଦ୍ଧ ଫିଟିଲା ପରି ।" (୩୦-୩୮)

ଲାବଣ୍ୟବତୀ— "ଏକାଳେ କରି କୋରକ    କରି ତରୁଣ ଢଳାକ
ବୋଇଲା ହେ ନୀବେଶ୍ୱରୀ ବିନସ୍ତ ଘେନ ।
ଚରଣେ ଅଳତା ପରି    ପଛେ ପଛେ ଗ୍ରହି ପରି
ଅନୁସରି ଥିବାରୁ ମୋ ହେଉଛି ମନ ।
ମୋତେ ଦିଅ ବସନ ଭାଗ୍ୟ
ହେଲି କି ସବୁମତେ ମୁଁ କୃତାର୍ଥ ଯୋଗ୍ୟ ।" (୧୧-୩୦)

ବିଦଗ୍ଧ ଚିନ୍ତାମଣି—"ଏ କାଳରେ ଯୋଡ଼ ପାଣି ରସିକ ମୁକୁଟମଣି
ଯାହି ବନ୍ଧୁକର ବୋଲି ବିନତି କଲେ ।
ସୁଷମାସନରେ ବିଜେ ବଲେ ହୋଇଲେ ଏଣିକି
ଭଣା କାହାକୁ ବିସ୍ମର ବିଧି ହୋଇଲେ ।
ଦୟାନିଧି ଦାସ ବସିଲା ।
ଅନା ବାନା ଉତ୍ତୁ ଲେକେ ସୁପ୍ରେମ ଶୀଳା । (୩୦-୪୫)

କେବଳ ଏହି ଛାନ୍ଦରେ ନୁହେଁ, ବିଦଗ୍ଧ ଚିନ୍ତାମଣିର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଭଞ୍ଜଙ୍କର ପ୍ରଭାବ ବହୁଳଭାବରେ ଅନୁଭୂତ ହୋଇଥାଏ । ଯେପରି—
ଲାବଣ୍ୟବତୀ—ଚନ୍ଦ୍ର ସୁଖ ଚନ୍ଦନକୁ ଛେଦନ ତାମସ ଚନ୍ଦ୍ର
ଫିଙ୍ଗିଛୁ ତାତ ସିଦ୍ଧିରେ କାମ କ ଶ୍ରେଷ୍ଠେ ।" ଛା. ୧୧-୧

ବିଦଗ୍ଧ ଚିନ୍ତାମଣି—"ତାତ ଦୀନବନ୍ଧୁ ତୁ ତ ଦୀନ ବଧୂ କେଉଁ ସିଦ୍ଧି ରଖିବାକୁ ।
ଚନ୍ଦ୍ର ସୁଖ ହରଥିବାରୁ କି ହର ବିନାଶୁ ଚନ୍ଦ୍ର ସୁଖକୁ ।"
ଛା. ୩୨।୧୭

ଲାବଣ୍ୟବତୀ—"ଶୁଣି ବୋଇଲେ ହେ ଜାଣିତ ନ ଥିଲି ଦଇବ ତୁ ଏଡ଼େ ଦାରୁଣ
କ୍ଷୁଧାତୁରକୁ ସୁଧା ତୁଳା ଭୋଜନ ପରଶିବା କେଉଁ କାରଣ ।
ଭୁଞ୍ଜି ବସିବା ବେଳେ କୁଳଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏତେ କଷଣ କିମ୍ପା ଦେଲୁ ।"

ବିଦଗ୍ଧ ଚିନ୍ତାମଣି—"ପୁଣି ବୋଲେ ବିଧି କଲୁ ତ ଅବଧି କେଉଁ ନିଧି ଅରଜିଲୁ
ଭୋକିକି ପରଶି ସୁଧାଭୁଞ୍ଜି ବସି ଶିରେ ପବି ବରଷିଲୁ । ଛା. ୩୬।୭

ଉପେନ୍ଦ୍ରଭଞ୍ଜଙ୍କର 'ବଜାର ବୋଲି' ପୁସ୍ତିକା ଏକ ପ୍ରକ୍ଷିପ୍ତ ରଚନା ବୋଲି ମୁଁ କିଛିଦିନ ତଳେ 'ବଜାର ବୋଲି କାହାର' ନାମକ ସନ୍ଦର୍ଭ 'ଝଙ୍କାର' ପତ୍ରିକାରେ ପ୍ରକାଶ କରିଥିଲି । ଯଦି ସେହି ପୁସ୍ତିକାକୁ ଉପେନ୍ଦ୍ରଙ୍କର ରଚନା ବୋଲି ଧରାଯାଏ, ତେବେ ତାହାର ପ୍ରଭାବ ମଧ୍ୟ ଅଭିମନ୍ୟୁଙ୍କୁ ପ୍ରଭାବିତ କରିଛି । ବିଦଗ୍ଧ ଚିନ୍ତାମଣିର ଛା. ୭୫ ପୂରାପୂରି 'ବଜାର ବୋଲି' ଢଙ୍ଗରେ ଲେଖାଯାଇଛି; ଯାହାର ପଦାବଳୀ ଉଦାହରଣ ଦେବା ଏଠାରେ ନିଷ୍ପ୍ରୟୋଜନ ବୋଲି ମନେହୋଇଥାଏ । ଏହାଛଡ଼ା ଲାବଣ୍ୟବତୀର ବେଶକରଣ ଛାନ୍ଦର ପ୍ରଭାବ (ଛା. ୪) ବିଦଗ୍ଧ ଚିନ୍ତାମଣିର ଶ୍ରୀରାଧାଙ୍କ ବେଶକରଣ ଛାନ୍ଦ (ଛା. ୫୧)କୁ ଓତଃପ୍ରୋତ ଭାବରେ ପ୍ରଭାବିତ କରିବାର ଜଣାଯାଏ ।

ବିଦଗ୍ଧ ଚିନ୍ତାମଣି କାବ୍ୟ ପାଠକଲେ ଦେଖାଯାଏ ଯେ କବି ଉପେନ୍ଦ୍ରଙ୍କର 'ଲାବଣ୍ୟବତୀ' କାବ୍ୟଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଅଛନ୍ତି । ଉପେନ୍ଦ୍ରଙ୍କର

ରଚନାଶୈଳୀ, ଆଲଙ୍କାରିକତା ନାୟକନାୟିକାର ବେଶଭୂଷା ଓ ରୂପବର୍ଣ୍ଣନା ପ୍ରଭୃତି ପ୍ରତ୍ୟେକ ବିଷୟରେ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି ପ୍ରଭାବିତ ହେଲେ ହେଁ ଅଭିମନ୍ୟୁ ସ୍ୱକଳ୍ପନା, କବିତ୍ୱର ଚମତ୍କାରିତା ଓ ବୈଶିଷ୍ଟ୍ୟ ପ୍ରତିପାଦନରେ ବେଳେ ବେଳେ ଉପେନ୍ଦ୍ରଙ୍କୁ ବଳିପଡ଼ିଛନ୍ତି । ଏହା ଅତି ସାଧାରଣ କଥା ଯେ ଭଞ୍ଜଯୁଗ ଓ ଭଞ୍ଜପ୍ରତିଭାର ପ୍ରବଳ ଜୁଆରରେ ସେତେବେଳର ଓଡ଼ିଆ ସାହିତ୍ୟ ପ୍ଲାବିତ ହୋଇଥିଲା ଓ ଅଭିମନ୍ୟୁଙ୍କର ଯେତେ ନିଜତ୍ୱ ଥାଉ ନା କାହିଁକି; ସେ ଉକ୍ତ ପ୍ରଭାବରୁ ଆଦୌ ମୁକ୍ତିଲାଭ କରିନାହାନ୍ତି, ବରଂ ଅଭିମନ୍ୟୁ ଉପେନ୍ଦ୍ରଙ୍କୁ କବି ପ୍ରତିଭା ଓ ଆଲଙ୍କାରିକ ରଚନାରେ ବଳିପଡ଼ିବା ପାଇଁ ଯେପରି ସତତ ଚେଷ୍ଟିତ, ତାହା ବିଦଗ୍ଧ ଚିନ୍ତାମଣି ପାଠରୁ ଜଣାପଡ଼ିଥାଏ ।

## ସଦାନନ୍ଦ, କବିସୂର୍ଯ୍ୟ ଓ ଅଭିମନ୍ୟୁ—

ଆଗରୁ କୁହାଯାଇଛି ଯେ ଅଭିମନ୍ୟୁଙ୍କର ଶିକ୍ଷା ତଥା ଦୀକ୍ଷା ଗୁରୁ ଥିଲେ କବିସୂର୍ଯ୍ୟ ବ୍ରହ୍ମା ଏବଂ ସଦାନନ୍ଦଙ୍କର କବିପ୍ରତିଭାର ପ୍ରତିବିମ୍ବ ଅଭିମନ୍ୟୁଙ୍କର ରଚନାକୁ ପ୍ରଭାବିତ କରିଥିବା ସ୍ୱାଭାବିକ । ଅଭିମନ୍ୟୁ ତାଙ୍କର ପ୍ରେମକଳା କାବ୍ୟରେ ଲେଖିଛନ୍ତି—

"ଶ୍ରୀମତ୍ ଶ୍ରୀ ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା
କୃପାକଲେ ପ୍ରାପତ କବିତ୍ୱ ମାର୍ଗ ସୀମା ।"

କେବଳ କବିସୂର୍ଯ୍ୟ ବ୍ରହ୍ମାଙ୍କର ଯୁଗଳରସାମୃତ ଲହରୀ କାବ୍ୟ ପାଠକଲେ ଜଣାଯାଏ ଯେ ତାଙ୍କର କାବ୍ୟ ଅଭିମନ୍ୟୁଙ୍କୁ ଯଥେଷ୍ଟ ଭାବରେ ପ୍ରଭାବିତ କରିଛି ।

ଯୁଗଳରସାମୃତ ଲହରୀରେ କବିସୂର୍ଯ୍ୟ ଯେଉଁ ବାତ୍ସଲ୍ୟରସର ଅବତାରଣା କରିଅଛନ୍ତି, ତାହାର ଅପ୍ରତିହତ ପ୍ରଭାବ ଅଭିମନ୍ୟୁଙ୍କ କାବ୍ୟରେ ପରିଲକ୍ଷିତ ହୋଇଥାଏ । ଏଠାରେ ତହିଁର କେତେକ ଉଦାହରଣ ଦିଆଗଲା ।

"ମୋର କଳା କାହିଁଚ । ଦିଶୁଅଛି କେଡ଼େ ସଞ୍ଚ ଲୋ ।
ଲବଣୀ ମାଗଇ ଲଞ୍ଚ ଲୋ । ବନେ ଗଲା କେଉଁ ପାଞ୍ଚ ଲୋ ।"

(ଗ୍ରୀ. ୫-୧)

"ସବୁର ମୁଣ୍ଡରେ ଫୁଲ, ମୋ ଧନ ମସ୍ତକେ କେଡ଼େ ମଞ୍ଜୁଳ ସେ
ରଙ୍ଗବର୍ଣ୍ଣ ଜାମୁଡ଼ାଳ ଲୋ ।" (ଗ୍ରୀ. ୫-୪)

"ଶିଖୀପୁଚ୍ଛ ଲାଙ୍କ ଚୂଡ଼ା ଗୋ । ତା ମୂଳକୁ ନାନା କୁସୁମ ।
ବେଢ଼ା ଗୋ ପରାଣ ସଖି । ସେହି ଗୋପଘର ବୁଢ଼ା ଗୋ ।
କାଁଆପଟି ଦୁଇଧାଡ଼ି ଗୋ । ବାମ ଦକ୍ଷିଣକୁ ରହିଛି ବେଢ଼ି ଗୋ ।
ପରାଣ ସଖି । ଧଇର୍ଯ୍ୟ ଦେଲା ଘଉଡ଼ି ଗୋ ।"

"ନବରଙ୍ଗ ଜାମୁଡ଼ାଳ । କର୍ଣ୍ଣେ ଖୋସିଅଛି ଗଣ୍ଡକୁ ଢଳ ଗୋ
ପରାଣ ସଖି । ଦେଖି ଜୀଇବ କେ ବାଳୀ ।" (ଗ୍ରୀ. ୬—୪।୫।୬)

ବଦଗ୍ଧ ଚନ୍ଦ୍ରାମଣିରେ :—

ଗୁଞ୍ଜି ଗୁଞ୍ଜର ମଣ୍ଡିତ । ଗୋଟା ମଲ୍ଲୀବେଢ଼ା ଚୂଡ଼ା ରଞ୍ଜିତ ଗୋ ।
କେକା ପୁଚ୍ଛ ତହିଁ ବିରାଜିତ । ସଜନୀ ଗୋ ।" (ବୃ. ୬୮।୧୫)
ଜାମୁଡାଳ ଖୋସିବାର । କଅାପଣ ବେଢ଼ା ତହିଁ ଦେବାର ଗୋ ।
ଦନ୍ତନାଶନ ସେ ତ ଜୁବାର ସଜନୀ ଗୋ ।" (୬୮।୧୬)

ଯୁଗଳରସାମୃତ ଲହରୀରେ—

"ଅନନ୍ତଚମ୍ଭ ଗୁଣ ଗୁଣା । ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦ ନପୁଣା । (ଗ୍ରୁ ୪୩।୧)

ବଦଗ୍ଧ ଚନ୍ଦ୍ରାମଣିରେ —

"ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟାଦ ନପୁଣ ପଦାର୍ଥିତେ
ଔଷଧ ସେ ମୋର ତୁମ୍ଭେ ବଣ ହେବ ସତେ ।" (୧।୧୪)

ଯୁଗଳରସାମୃତ ଲହରୀ—

"ବନ୍ଧୁରେ ମୋ ତନୁ ଦାହ । ଭସ୍ମ ପଡ଼ିଥିବ ଉହ ।
କଦବା ତୁ ଯମୁନାକୁ ଗଲେ । ଉଡ଼ିଣ ପବନ ବଳେ ।
ପଡ଼ିଣ ତୋ ପାଦତଳେ । ଜୀଇଁ ମୁଁ ଉଠିବ ମରଥିଲେ ରେ ।"
"ବନ୍ଧୁରେ ଏବା ନୋହିବା ବିହ ଯନମ ଯାଚିବ ।
ମାଗିବ ଶ୍ରୀରାଧା ଦାସୀ ହେବ" (ଗ୍ରୁ. ୪୫।୧୬-୧୩)

ବଦଗ୍ଧ ଚନ୍ଦ୍ରାମଣିରେ ମଧ୍ୟ ପୂର୍ବୋକ୍ତ ପଦର ଅନୁରୂପ ବର୍ଣ୍ଣନା ଦେଖାଯାଇଥାଏ ।

"ପୁଣି କହନ୍ତି ସଜନୀଙ୍କ ଗୃହିଁ । ଜୀବନ ଯିବାର ସନ୍ଦେହ ନାହିଁ ।
ସଖୀଗଣ ପୁଣି ଏତକ କର । ଶ୍ୟାମ ପଦଧୂଳି ବୋଲ ମୋ ଶିର ।
ତାଙ୍କ ଚନ୍ଦମୂର୍ତ୍ତି । ଦେଖାଇ ଥାଅ ପାଉ ନେତ୍ରଗତ ।
ଜୀବନ ଗଲେ ଏତକ କରିବ । ଶ୍ୟାମ ନାମ ମୋ ହୃଦରେ ଲହିବ ।
ଶ୍ୟାମରୂପ ମୂର୍ତ୍ତି ଉରେ ଲଗାଇ । ଶ୍ୟାମବସନ ଅଙ୍ଗରେ ଘୋଡ଼ାଇ ।
ଶ୍ୟାମଗଡ଼ପଥେ । ମୋ ଶବ ପୋତିବ ଆପଣା ହାତେ ।" (୩୨।୩୫-୩୬)

× × ×

"ଓଷଧୀମାନନଙ୍କେ ମାଗୁ ଛି ପଦଧର
ଓ କରିବ ଆଲେ ଦାସୀ ଡାକଲେ କଣୋତ୍ତ ।" (୧।୧୩)

ଅନ୍ୟତ୍ର ଶ୍ରୀକୃଷ୍ଣଙ୍କର ରୂପ ବର୍ଣ୍ଣନାରେ "ଯୁଗଳରସାମୃତ ଲହରୀ"ର ପ୍ରଭାବ ବଦଗ୍ଧ ଚନ୍ଦ୍ରାମଣିର ବଭିନ୍ନ ସ୍ଥଳରେ ମଧ୍ୟ ଅନୁଭୂତ ହୋଇଥାଏ । ଯେପରି—

"କି ଅବା ଘନ କଜ୍ଜ୍ୱଳ ଲବଣୀ । ବଣିକ ବିନ୍ଧ ଇନ୍ଦ୍ରନୀଳମଣି ।
ମଣି ମିଶାଇ ବାଟି ସ୍ନେହ ନୀରେ । କରେଖି ଗୁଣିଲା ସୁଧାନଧିରେ ।
ଧୀରେ ଗଢ଼ି ସତ । ସନ୍ତପଲ କରିବାକୁ ଜଗତ । ୨୧-୬୩)"

ବିଦଗ୍ଧ ଚନ୍ଦ୍ରାମଣିରେ—

"କଳାକଣ୍ଡଦଳା ଅଞ୍ଜନମର୍ଦ୍ଦିତ ଇନ୍ଦ୍ରନୀଳମଣିଘନ ।
ସୁଧା ଆନନ୍ଦ ଆହ୍ଲାଦ ମାଦକ ଶୃଙ୍ଗାର ପ୍ରେମ ମିଳନ ଗୋ ।
ପୁଣି ଶୋଭସମୁଦ୍ର ମନ୍ଥା ଲବଣୀ ଗୋ ଗୋଟି ସୃଷ୍ଟି କାନ୍ତ ସାର ଶ୍ରେଣୀ ଗୋ
ମହାଲବଣ୍ୟର ରତନୀ ଖଣି ଗୋ ।" (ଗ୍ରୁ. ୭-୨) ଇତ୍ୟାଦି ।

ଏହିପରି ଉଦାହରଣ ଅନେକ । ଅଭିମନ୍ୟୁଙ୍କର ରଚନାଶୈଳୀକୁ କବିସୂର୍ଯ୍ୟ ମଧ୍ୟ ଯଥେଷ୍ଟ ପ୍ରଭାବିତ କରିବାର ଜଣାଯାଇଥାଏ, ଯାହା ପରବର୍ତ୍ତୀ ପ୍ରସଙ୍ଗରେ ଆଲୋଚିତ ହେବ ।

## ରସକଲ୍ଲୋଳର ପ୍ରଭାବ—

କେବଳ ଉପେନ୍ଦ୍ର ବା କବିସୂର୍ଯ୍ୟ ବ୍ରହ୍ମାଙ୍କର କାବ୍ୟର ପ୍ରଭାବରେ ଯେ କବି ପ୍ରଭାବିତ ଏହା ନୁହେଁ— ରସକଲ୍ଲୋଳର ପ୍ରଭାବ ବିଦଗ୍ଧ ଚନ୍ଦ୍ରାମଣିର ସ୍ଥଳବିଶେଷରେ ପଡ଼ିଥିବାର ଲକ୍ଷ୍ୟ କରାଯାଇଥାଏ । ଯଥା—

ରସକଲ୍ଲୋଳ—"କାଳିନ୍ଦୀପୁର ସଞ୍ଚିତ ହୋଇଲା ପ୍ରାୟେ ଏକତ୍ର
କମନୀୟ ଧରେ କଳାଧଳା ଶ୍ରୀଅଙ୍ଗ ।"

× × × ×

"କଇବଲ୍ୟ ଲତ ହେଲେ ନ ପଡ଼ି ଜଠର ଜଳେ
ବଇକୁଣ୍ଠେ ବସି ବଇକୁଣ୍ଠ ସଙ୍କୋଚ ।" (ର. କ. ଗ୍ରୁ. ୧୧୯-୨୦)

ବିଦଗ୍ଧ ଚନ୍ଦ୍ରାମଣି—"ଶ୍ରୀରାମକୃଷ୍ଣ ଆଗମ ଗଙ୍ଗାଯମୁନା ସଙ୍ଗମ
ଜନତେ ପୋତହିଁ ସମେଳ ଗୋ ।" (ଗ୍ରୁ. ୬୪-୧୮)

× × × ×

ଅଙ୍ଗଦାହ ତାପ ଯିବ ଶୁଚିପଦ ଅରଜିବ
ସେରେ ମଜ୍ଜନ ଯେବେ ହେବ ଗୋ ।"

ରସକଲ୍ଲୋଳ—"କେତେ କଉତୁକ ଅଛନ୍ତି ଏଥି କେବଳ କ୍ଷୀର ସିନ୍ଧୁ ପ୍ରାୟ ମନ୍ଦିର
ରସଜାତ ଇତ୍ୟାଦି ।"(ଗ୍ରୁ. ୬୪-୧୯)

ବିଦଗ୍ଧ ଚନ୍ଦ୍ରାମଣି—"କେତେ କଉତୁକ ଫଳ ଉପୁଜିବ ଜାଣିବ କି ସ୍ୱାଦୁ ତାର ।"

ବିଦଗ୍ଧ ଚନ୍ଦ୍ରାମଣି ଶହ ଶହ ବର୍ଷ ଧରି ଓଡ଼ିଆ ସାହିତ୍ୟରେ ଏକ କ୍ଲାସିକ୍ସ ହୋଇ ରହିଆସିଛି—ଏହାର ଭିତ୍ତିଧାରା ଯାହା ହେଉ ନା କାହିଁକି, ତାହା

ଆଧୁନିକ ଓଡ଼ିଆ କବିମାନଙ୍କର ଲେଖାକୁ ମଧ୍ୟ ପ୍ରଭାବିତ କରିଥିବାର ଲକ୍ଷ୍ୟ କରାଯାଇଥାଏ । ଆଧୁନିକ ଯୁଗର କବିମାନଙ୍କ ମଧ୍ୟରେ ଗଙ୍ଗାଧର ମେହେର ମଧ୍ୟ ବିଦଗ୍ଧ ଚିନ୍ତାମଣିର ଭାବଧାରାରେ ପ୍ରଭାବିତ ହୋଇଅଛନ୍ତି । ତପସ୍ୱିନୀ କାବ୍ୟର ୫ମ ସର୍ଗରେ ସୀତାଙ୍କର ମୁନିଉଦ୍ୟାନ ଭ୍ରମଣବର୍ଣ୍ଣନା ବିଦଗ୍ଧ ଚିନ୍ତାମଣି କାବ୍ୟର ଛା. ୬୬ରେ ବର୍ଣ୍ଣିତ ସଖୀପରିବେଷ୍ଟିତା ଶ୍ରୀରାଧାଙ୍କ ଉଦ୍ୟାନ-ଭ୍ରମଣ ବର୍ଣ୍ଣନାର ଅନୁରୂପ । ଉଭୟ କାବ୍ୟରୁ ଏଠାରେ କେତେକ ତୁଳନାତ୍ମକ ଉଦାହରଣ ଦେଲେ ଭୁଲ ହେବ ନାହିଁ ।

ବିଦଗ୍ଧ ଚିନ୍ତାମଣି—

"ପ୍ରୀତି ମୂର୍ତ୍ତିମନ୍ତ କି ସେ ସାକ୍ଷାତେ । କ୍ରୀଡ଼ା କରଇ ବରାଙ୍ଗନାଯୁତେ ।
ରତିକି ନାହିଁରଥେ ଯାତ୍ରା କରି । ଅବନୀ ସାର୍ଥ କରୁଅଛି ଫେରି ।
ଅନୁମାନ ନ ସହିଲା ଯେ
ନିଧି ସିଙ୍କି ଯେନ ମୁକତି ରତିକି ବୃନ୍ଦାବନେ ଆଣିଥିଲା ।" (୬୬।୪)

ତପସ୍ୱିନୀରେ—

"ସଙ୍ଗେ ଯେଵେ ସତୀ ସଙ୍ଗ ନୀଗଣ
ଉଦ୍ୟାନରେ ଥରେ କଲେ ଭ୍ରମଣ ।
ଆର୍ଯ୍ୟାବର୍ତ୍ତି ଉରେ କି ଭାଗୀରଥୀ
ଚଳେ ଲଭି ସଖୀ-ବୃନ୍ଦ ସଙ୍ଗତି !
ଅଲଙ୍କୃତ ହେଲା ପଥ
ଉପହାସ କରି ଗନ୍ଧର୍ବ ଯୁବତୀ
ବିଳସିତ ଚୈତ୍ରରଥ । (୫।୨୦)"

ଅନ୍ୟତ୍ର ବିଦଗ୍ଧ ଚିନ୍ତାମଣିରେ—

"କାନ୍ତି ପ୍ରତିବିମ୍ବି ମହୀମଣ୍ଡଳ । ପ୍ରତୀତ ଯା ଗଢ଼ି ଜନମଣ୍ଡଳ ।
ଉତ୍ତର ଦିଶିଲା କାନକ ଯାକ । ହେମେ ସର୍ଜନା କଲା ବିଶ୍ୱସୃକ ।
ଏମନ୍ତ ପ୍ରତୀତ ହେଲା
ଚନ୍ଦ୍ରକାନ୍ତ ହରିଆଣିଲା ଗଉରୀ ବଢ଼ାଇ ଲୋକେ ରଖିଲା ।" (୬୬।୬)

ତପସ୍ୱିନୀରେ—

"ସତୀହୃଦ ଶ୍ୟାମ ଶ୍ରୀରାମମୟ । ସେ ହୃଦୟୁ ହରି ପାଦପଦ୍ମୟ ।
କ୍ରମେ ହେଲେ ଘନଶ୍ୟାମ ବରଣ । ପଡ଼ ଏକା ସତୀ ମତିଶରଣ ।
ଅବଶ୍ୟନ କାନ୍ତିମାନ
ଆକର୍ଷିତ ହୋଇ କୁସୁମେ କୁସୁମେ
କ୍ରମେ ଯାଇ କଲେ ସ୍ଥାନ ।" (୫।୮)

ଏହିପରି ଅନେକ ଉଦାହରଣ ଦିଆଯାଇପାରେ । କବି ଅଭିମନ୍ୟୁ ତାଙ୍କର ପୂର୍ବବର୍ତ୍ତୀ ବହୁ କବିଙ୍କ ଦ୍ୱାରା ଯେପରି ପ୍ରଭାବିତ ହୋଇଛନ୍ତି, ସେହିପରି ସେ ମଧ୍ୟ ପରବର୍ତ୍ତୀ ବହୁ କବିଙ୍କର ଲେଖନୀକୁ ଉଦ୍‌ବୁଦ୍ଧ କରିଅଛନ୍ତି ।

## (କ) ବିଦଗ୍ଧ ଚିନ୍ତାମଣିର ରଚନାଶୈଳୀ

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିଦଗ୍ଧ ଚିନ୍ତାମଣିର ସ୍ଥାନ ଅତି ଉଚ୍ଚରେ ଏବଂ ଭକ୍ତିଗ୍ରନ୍ଥ ଭାବରେ ଏହି ଗ୍ରନ୍ଥ ଖଣ୍ଡିକ ଓଡ଼ିଶାର ସର୍ବତ୍ର ଆଦୃତ ଓ ପୂଜିତ । ରୀତିଯୁଗର କାବ୍ୟରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିବା ବିଦଗ୍ଧ ଚିନ୍ତାମଣି କାବ୍ୟ ଭଙ୍ଗୀଯୁଗୀତ ଅନୁସରଣ କଲେ ବି ତାହାର ସ୍ୱାତନ୍ତ୍ର୍ୟ ବିଭିନ୍ନ ସ୍ଥଳରେ ଫୁଟିଉଠିଛି ।

ରୀତି, Style ବା ଶୈଳୀ କାବ୍ୟର ଅବିଚ୍ଛେଦ୍ୟ ଅଙ୍ଗ—କାବ୍ୟନାୟିକାର ପରିଧେୟ ହିଁ ରୀତି । ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଆଲଙ୍କାରିକ ବାମନାଚାର୍ଯ୍ୟ କହିଛନ୍ତି, 'ରୀତିରାତ୍ମା କାବ୍ୟସ୍ୟ' ଅର୍ଥାତ୍ ରୀତି ହେଉଛି କାବ୍ୟର ଆତ୍ମା—ରସ ନୁହେଁ ଓ ସେ ମଧ୍ୟ ସେହି ଗ୍ରନ୍ଥରେ ଅନ୍ୟତ୍ର କହିଅଛନ୍ତି, "ବିଶିଷ୍ଟା ପଦ ରଚନା ରୀତିଃ ।" ସଂସ୍କୃତ ଅଲଙ୍କାରଶାସ୍ତ୍ରରେ ଆଲଙ୍କାରିକଗଣ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଲୀ, ଲାଟୀ, ମାଗଧୀ ଓ ଆବନ୍ତିକା ପ୍ରଭୃତି ଯେଉଁ ରୀତିର ନିୟମାବଳୀ ଦେଇଅଛନ୍ତି, ସେସବୁ ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ ବା ଓଡ଼ିଆ ସାହିତ୍ୟ ସେସବୁ ନିୟମ ମାନି ନିୟନ୍ତ୍ରିତ ହୋଇ ନଥିଲା ।

ଓଡ଼ିଆ ସାହିତ୍ୟ ବହୁ ପ୍ରାଚୀନ କାଳରୁ କାବ୍ୟ କବିତାରେ ରଚନାଶୈଳୀରେ କେତୋଟି ପଦ୍ଧତି ଗ୍ରହଣ କରିଥିଲା । ଓଡ଼ିଶାର ପ୍ରାଚୀନ କବିବୃନ୍ଦ କେହି ପୂର୍ଣ୍ଣ ପ୍ରାକୃତ ବା କଥିତ ଭାଷାରେ, କେହି ସାଧୁ, ସାହିତ୍ୟିକ ବା ସଂସ୍କୃତ ଶବ୍ଦ ପ୍ରଭାବିତ ଭାଷାରେ, ଅନ୍ୟ କେହି ଉଭୟ ସାହିତ୍ୟିକ ଓ କଥିତ ଉଭୟ ଭାଷାର ସମ୍ମିଶ୍ରଣରେ କାବ୍ୟ ରଚନା କରିଥିଲେ ।

ଅଭିମନ୍ୟୁଙ୍କ କାବ୍ୟ ଉଭୟ ସାହିତ୍ୟିକ ଓ କଥିତ ବା ତାଙ୍କ ଭାଷାରେ "ଦିବ୍ୟ-ଅଦିବ୍ୟ" ଭାଷାର ମଧୁର ସମନ୍ୱୟ ମାତ୍ର । ସେ ଏଥିପାଇଁ ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ ଲେଖିଛନ୍ତି—

> "ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଙ୍ଗି
> ଦେଖି ମହାଜନ ମାର୍ଗ ପରମ୍ପରା ବାଧି ।" (ଛ. ୧-୩୪)

ତେବେ ଅଭିମନ୍ୟୁ ଏହି ଦିବ୍ୟ-ଅଦିବ୍ୟ ଭାଷା ମିଶ୍ରଣରେ କାବ୍ୟ ଲେଖିବାର ପ୍ରେରଣା ପାଇଲେ କେଉଁଠୁ ? ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ, ସେ ଏହି ଆଦର୍ଶ ତାଙ୍କର ଦୀକ୍ଷାଗୁରୁ କବିସୂର୍ଯ୍ୟ ବ୍ରହ୍ମାଙ୍କଠାରୁ ଲାଭ କରିଅଛନ୍ତି । କବିସୂର୍ଯ୍ୟ ବ୍ରହ୍ମାଙ୍କର କାବ୍ୟାବଳୀ ଅଭିମନ୍ୟୁଙ୍କ କାବ୍ୟ ତୁଲ୍ୟ ଦିବ୍ୟ-ଅଦିବ୍ୟ ଭାଷାର କାବ୍ୟ ।

ଉଦାହରଣ ସ୍ୱରୂପ ଯେପରି—

"ମାତା ଡାକନ୍ତି ଆରେ କହ୍ନାଇ । ଶୀଘ୍ର ଆସନ୍ତି ଅଛୁ ଅନାଇଁ ।
ମଠ ହୋଇଲେ ଯିବ ମୁଁ ଧାଇଁ । ମୋ ଗଳାମାଳରେ ।
ଅନ୍ଧ ଲଉଡ଼ି ଦୁଃଖିଙ୍କଖାଳ । ଦୁଷ୍ଟପଣେ ଖାଉ ସିନା ଗାଳରେ ।"

(ଯୁଗଳ ରସାମୃତ ଲହରୀ ଛ. ୪-୭)

ସେହି ଛନ୍ଦରେ—"କେହୁ ନଉଡ଼ି ଡଞ୍ଚା ସୁନ୍ଦର ସେ
ଚନ୍ଦ ହୋଇଛୁ ସଲଖ ସାର ସେ ।

"ଜୟ ଶବଦ କରି ସମସ୍ତ । ଯଷ୍ଟି ମଣ୍ଡିଲେ ଗୋବିନ୍ଦ ହସ୍ତ ।
ମାତାପିତାରେ ସେ ପ୍ରଣିପତ୍ୟ କଲ୍ୟାଣ କଲେ ସେ ।" (ଛ. ୪-୩)

× × × ×

"ବିପିନେ ଏଣେ କୃଷ୍ଣ ପ୍ରବେଶ । ଚରିଲେ ଗାବେ କୋମଳ ଘାସ ।
ଗୋପାଳବାଳ ହୋଇ ଆବେଶ । ଛୁଡ଼ନ୍ତି ଚଢ଼ି ଯେ ।
କାନ୍ଧି ବୁଲନ୍ତି ଘୋଡ଼ିକ ଯୋଡ଼ି ଯେ । ହା ହା କ ଛାନ ବୋଲିଣ ଗଢ଼ି ଯେ ।
କେହି ଦେଖିଣ କପି ଧାଉଡ଼ି । କେହୁ ଆସଇ ଭୟେ ବାହୁଡ଼ି ।
କେ ଜଡ଼ାଜଡ଼ି କେ ତଡ଼ାତଡ଼ି କେ ଭିଡ଼ାଭିଡ଼ି ଯେ ।" (ଛ. ୪-୮)

କେବଳ ଏତିକ ନୁହେଁ, ତାଙ୍କ କାବ୍ୟର ସବଂନ୍ଧ ଏହିପରି ଦବ୍ୟ-ଅଦବ୍ୟ ଭାଷାର ମିଳନ ଦେଖିବାକୁ ମିଳିଥାଏ । ଏହାଛଡ଼ା ଦବ୍ୟ ଭାଷାର ପ୍ରୟୋଗରେ ସେ କିପରି ଭଙ୍ଗୀସ୍ଫୁରିତ ତଥା କ୍ଲିଷ୍ଟତାକୁ କାବ୍ୟରେ ସ୍ଥାନ ଦେଇଅଛନ୍ତି, ତାହା ମଧ୍ୟ ଦେଖିବାର କଥା । ଏହାର କେତେକ ଉଦାହରଣ ଦେବା ଅପ୍ରାସଙ୍ଗିକ ମନେ ହୋଇ ନଥ ଏ । ଯେପରି—

"ହରି ଦେଖିଲେ ହରିନେବେଟି ଧରି ହରିକଟୀ କି ମନାକରି,
ହରିସୁତା ନିକଟେ ହରି ସେ ସବୁଘାଟେ ହରିବଦନଟି ତାହାର ଗୋ ।"

(ଛ. ୭-୩)

ପୁଣି—"ସାରଙ୍ଗ ତରୁତଳେ ସାରଙ୍ଗଧର ହେଲେ ସାରଙ୍ଗମୁଖୀ ଦେଖଇଟି ।
ସାରଙ୍ଗ ସାରଙ୍ଗରେ ସାରଙ୍ଗ ସାରଙ୍ଗରେ ସାରଙ୍ଗ ସାରଙ୍ଗ
ଦଅଇଟି ଗୋ ।" (ଛ. ୭-୭)

ଅତମଲ୍ୟ ଠିକ୍ ତାଙ୍କ ଗୁରୁଙ୍କର ପଦାଙ୍କ ଅନୁସରଣ କରି ବିଦଗ୍ଧ ଚିନ୍ତାମଣିକୁ "ଦବ୍ୟ-ଅଦବ୍ୟ ଭାଷା ପଦରେ ସିଦ୍ଧ" କରିଅଛନ୍ତି । ଏହାଦ୍ୱାରା ସେ କାବ୍ୟ ରଚନା ସୀତରୁ ନିଜକୁ ବ୍ୟତିକ୍ରାନ୍ତ କରିଥିବାରୁ ସେ ତାହାର ନଜିର ଦେଖାଇ କହିଅଛନ୍ତି ଯେ "ମହାଜନୋଯେନ ଗତ ସଃ ପନ୍ଥାଃ" ବା "ଦେଖ ମହାଜନମାର୍ଗ ପରଂପରା ବଧ୍ୟ ।"

ଦୀନକୃଷ୍ଣ ଓ ଉପେନ୍ଦ୍ରଭଞ୍ଜଙ୍କର ରଚନାଗୁଡ଼ିକରେ ରକ୍ଷଣଶୀଳତା ଥିଲା କିନ୍ତୁ ପରବର୍ତ୍ତୀ ଅଭିମନ୍ୟୁ ଓ କବିସୂର୍ଯ୍ୟ ପ୍ରଭୃତି କବିଗଣ ପୂର୍ବରୁ ପୂର୍ଣ୍ଣକ୍ଳିଷ୍ଟ ଗୀତ ପ୍ରଣୟନ କରି ଉଭୟ କ୍ଳିଷ୍ଟ ଓ ଗ୍ରାମ୍ୟଗୀତ ମଧ୍ୟରେ ସହଯୋଗ ଆଣିଲେ ।

ଏହାଦ୍ୱାରା ସାହିତ୍ୟ ଏକ ଗଣତାନ୍ତ୍ରିକ ରୂପରେଖ ପାଇଲା 'ଦିବ୍ୟ-ଅଦିବ୍ୟ'ର ସମନ୍ୱୟରେ । ଅଭିମନ୍ୟୁଙ୍କର ରଚନାରେ ଏହି ପ୍ରକାର ଗୀତ ବିଭିନ୍ନ ସ୍ଥଳରେ ପ୍ରତିଫଳିତ ହୋଇଛି କହିବା ବାହୁଲ୍ୟ ହେବ । ଏହାର କେତୋଟି ଉଦ୍ଧୃତ ନିମ୍ନରେ ଦିଆଗଲା । ଯେପରି :—

"ଉଙ୍ଗୀ ବିଟପୁରେ କୃଷ୍ଣ ଗଣ୍ଡି ଆ । କାହା କଟିସ୍ଥିତ ଦେଖି ମାଠିଆ ।<br>
ବୋଲନ୍ତି ବନ୍ଧୁ ମୁଁ ତୋହ ଦେଠିଆ । ପାଣି ଆଣିବାକୁ ମୋତେ ପଠିଆ ଗୋ ।<br>
ଶୁଣି ଗୋପୀ ହୋଇ ଠିଆ ସେ<br>
ହସିଲା ଭାସିଲା ଝଡ଼ି ଲକୁ କାହ୍ନୁ ହେଲୁ ଏଡ଼େ ଅପାଠିଆରେ ।"

ଅନ୍ୟତ୍ର—

"ଯୋଏ ସଜାଡ଼ି କାଛଟା ଭିଡ଼ି ଧାଡ଼ିକ ଧାଡ଼ି ଆଗେ ଦଉଡ଼ି ଯୋଡ଼ିକ ଯୋଡ଼ି<br>
ବୁଲନ୍ତି ବାଡ଼ି ତନୁକୁ ଆଡ଼ି ସେ । କେହି ଘେଉଡ଼ି ନାଥିଙ୍ଗ ଛଡ଼ି<br>
କେହି ବାହୁଡ଼ି ମାରଇ ଓଡ଼ି ବାହାକୁ ମୋଡ଼ି ଗୁଡ଼ଇ ରଡ଼ି ।<br>
ଶିରକୁ ଝାଡ଼ି ସେ । କେ ମାଲ ବନ୍ଧାଣରେ ଯାଉଛି ଗଡ଼ି ସେ<br>
କେ କାହା ଉରେ ପୁଣି ବସଇ ମାଡ଼ି ସେ । କେ ମୋଡାମୋଡ଼ି କେ<br>
ଭିଡ଼ାଭିଡ଼ି କେ ଜଡ଼ାଜଡ଼ି ସେ ପଡ଼ାପଡ଼ି କେ କୋଡ଼ାକୋଡ଼ି କେ<br>
ହୁଡ଼ାହୁଡ଼ି ସେ ।"

କିପରି ଗ୍ରାମ୍ୟ ବା କଥିତ ଭାଷାରେ ସରଳ ପଦବିନ୍ୟାସ ହୋଇପାରେ, ଏହି ପଦଗୁଡ଼ିକ ତାହାର ଉତ୍କୃଷ୍ଟ ଉଦାହରଣ । ଏହି ପ୍ରକାର ଖାଣ୍ଟି ଓଡ଼ିଆ ଭାଷା ସହିତ ଶୁଦ୍ଧ ସାଧୁ ଭାଷାରେ ମିଶ୍ରିତ ପଦାବଳୀ କାବ୍ୟର ବିଭିନ୍ନ ସ୍ଥଳରେ ପାଠକର ଚିତ୍ତହରଣ କରିଥାଏ । ବିଦଗ୍ଧ ଚିନ୍ତାମଣିର ପ୍ରାୟ ସର୍ବତ୍ର ଏହି ଶୈଳୀ ବ୍ୟବହୃତ । 'ଧୀରେ ଯେନ କାନନରେ କୃଷ୍ଣ ବିଳମ୍ବିତ', 'ଧୀରେ ରାଧା କର ଧରି କହୁଛନ୍ତି ଦୂତୀକି' ବା 'ଦିନେ ଦିନେ ପ୍ରିୟତମା । ପ୍ରେମେ ହୋଇ ଆତୁରୀ' ପ୍ରଭୃତି ବିଭିନ୍ନ ଛାନ୍ଦରେ କବିଙ୍କର ପଦବିନ୍ୟାସ ଯେ ଦିବ୍ୟ-ଅଦିବ୍ୟ ଭାଷାରେ ମିଶ୍ରିତ କରିଥିବାର ଶ୍ରେଷ୍ଠ ଉଦାହରଣ । ନିମ୍ନୋକ୍ତ ପଦଗୁଡ଼ିକରେ କିପରି ଗ୍ରାମ୍ୟ ଓ ସାଧୁଭାଷାର ମିଶ୍ରଣ ଘଟିଛି, ତାହା ଏଠାରେ ଲକ୍ଷ୍ୟ କରିବାର କଥା । ଯେପରି—

"ନିଧନ ସଖାଲୋ ମୋର ଦଶରଥପୁର ।<br>
ଅନ୍ଧର ଲଉଡ଼ି ବାବୁ ହୃଦରେ ହାର । ବଳାମାଣିକ ରେ । ୨ ।<br>
ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ ।

ହୃଦତାପ ବିନାଶନେ ଗୁ ହରିଚନ୍ଦନ । କଳାମାଣିକ ରେ ।" ୫ ।
"ଖାଲି ବୋହୁଥିବ ଅଙ୍ଗ ଲଗି ଝାଙ୍ଗି ଝିଅ,
ଶ୍ରମପାଇ ତରୁତଳେ ବସିଥିବୁ ପଥି । କଳାମାଣିକ ରେ" । ୧୦ ।

ଏହି ଉକ୍ତିରେ 'ଦରିଦ୍ରପସରି' 'ଅନ୍ଧର ଲଉଡ଼ି' 'ଏକଇ ନନ୍ଦନ' 'ଅଙ୍ଗ ଲଗି ଝାଙ୍ଗିଝିଅ' ପ୍ରଭୃତି ପଦରେ ଦିବ୍ୟ-ଅଦିବ୍ୟ ବା ଗ୍ରାମ୍ୟ ଓ ସାଧୁ ଶବ୍ଦର ମିଳନ ଘଟିଛି । ଏସବୁ ପଦ ଶ୍ରୁତିକଟୁତା ପରିବର୍ତ୍ତେ କାବ୍ୟରେ ଶ୍ରୁତିମଧୁରତା ତଥା ସରସତା ପ୍ରତି ପଦେ ପଦେ ସୃଷ୍ଟି କରନ୍ତି ଏବଂ ଏହା ହିଁ ବିଦଗ୍ଧ ଚିନ୍ତାମଣିର ଅଭିନବ ରଚନାଶୈଳୀ ।

ବିଦଗ୍ଧ କବି ଅଭିମନ୍ୟୁ ରଚନାଶୈଳୀରେ ଭଞ୍ଜଙ୍କର ପଦାଙ୍କ ମଧ୍ୟ ପଦେ ପଦେ ଅନୁସରଣ କରିଛନ୍ତି । ସେ ଅନ୍ୟତ୍ର ଶ୍ଲେଷାଲଙ୍କାରରେ କହିଅଛନ୍ତି—

"ଉପେନ୍ଦ୍ର ପଦ ଅଭିମନ୍ୟୁ ମନୁ
ଉପେକ୍ଷା ସେ ନୋହିବ ତ ଦିନୁ ଦିନୁ ।" (ଗ୍ରି. ୮।୧୧)

ରଚନାଶୈଳୀ ବିଷୟରେ ଦେଖାଯାଏ ଯେ ବିଦଗ୍ଧ ଚିନ୍ତାମଣିରେ ପ୍ରାୟ ସର୍ବତ୍ର ଅଭିମନ୍ୟୁ ସ୍ୱରଚନା ପଦ୍ଧତି 'ଦିବ୍ୟ-ଅଦିବ୍ୟ' ଭାଷାରେ ସମ୍ପାଦିତ କରିଥିଲେ ହେଁ ଭଞ୍ଜଙ୍କ ଶବ୍ଦାଳଙ୍କାର ଓ ଶବ୍ଦପାଣ୍ଡିତ୍ୟ ଦେଖାଇବାକୁ ଭୁଲିନାହାନ୍ତି । ସ୍ଥଳ-ବିଶେଷରେ ଏହି ପ୍ରକାର ରଚନାପଦ୍ଧତି କାବ୍ୟର ସରସତା ଓ ଭାବର ସ୍ୱଚ୍ଛନ୍ଦ ବୋଧକୁ ଯେ ସମ୍ପୂର୍ଣ୍ଣ ଭାବେ ନଷ୍ଟ କରିଦେଇଛି, କହିବା ବାହୁଲ୍ୟ ମାତ୍ର । ଏହାର ଅନେକ ଉଦାହରଣ ଦିଆଯାଇପାରେ । ଯେପରି—

"ଜଳସୁତ ସୁତ ତା ସୁତ ତା ସୁତ ତା ସୁତ ସୁତ ତା ସୁତ ।
ତା ସୁତ ସୁତ ସୁତ ହେଲ ଜୀବିତ ନାଶ୍ୱସେହେ ବିପରୀତ ହେ ବୀର ।
ତୁମ୍ଭେ ବୋଲଅ ରସିକବର ହେ । ପ୍ରିୟାପ୍ରୀତି କରୁଅଛ ଦୂର କିଁହେ ।"
(ଗ୍ରି. ୭୨।୧)

ବା ସେହି ଛାନ୍ଦରେ ଅନ୍ୟତ୍ର—

"ବିପରୀତ ଶର ଘାତରେ ବିଦେ କରୁଅଛୁ ମନସୁତ
ମୋ ପରି ପାରିଜା ସରଗ ସୁତ କି ଦେଇଛୁ ବିରଞ୍ଚିସୁତ ହେ ଦେବ;
କଣ୍ଟସୁତ-କୃତ କେ ଭଙ୍ଗିବ । ଦ୍ୱିମପୁତ୍ର ମାତ୍ର ଅଛୁ ଜୀବ ହେ ।"
(ଗ୍ରି. ୭୨।୨)

ଜଗତ ପରାଣ ଯେ କରେ ଭକ୍ଷଣ ତାକୁ ଯେ କରେ ଭକ୍ଷଣ ।
ତାହା ଧ୍ୱଜ ମାତ-ତାତ-ଗର୍ଭିକଟ ବାସ ତ ସତ ସ୍ମରଣ ହେ ଧୀର ।
ଏତେବେଳେ ପ୍ରତିକାର କର ହେ । କେହି ବୋଲଅ ଦେଶେଶ୍ୱର ହେ ।"
(ଗ୍ରି. ୭୨।୩)

ଏହି ସମସ୍ତ ପଦ ବିଶ୍ଳେଷଣ କଲେ ଦେଖାଯାଏ ଯେ ସେ ଶବ୍ଦାଳଙ୍କାର ଯୋଜନାରେ ଭଞ୍ଜୀୟ ରୀତି ପୂରାପୂରି ଅନୁସରଣ କରିଅଛନ୍ତି । କବି 'ହିମାଳୟର କନ୍ଦର' ନ କହି 'ଜଗତ ପବ୍ରାଣ ଯେ କରେ ଭକ୍ଷଣ ତାକୁ ଯେ କରେ ଭକ୍ଷଣ । ତାହା ଧ୍ଵଜମାତ-ତାତ-ଗର୍ତ୍ତିବନ୍ତ ବାସ ବୋଲି କହିଅଛନ୍ତି । ଏଠାରେ ଜଗତ ପବ୍ରାଣ ବାୟୁ, ତାକୁ ଯେ ଭକ୍ଷଣ କରେ ଅର୍ଥାତ୍ ସର୍ପ । ପୁଣି ତାକୁ ଯେ ଭକ୍ଷଣ କରେ ମୟୁର । ତାହାର ଧ୍ଵଜ ଅର୍ଥାତ୍ ମୟୂରଧ୍ଵଜ କାର୍ତ୍ତିକେୟ, ତାଙ୍କର ମାତା ପାର୍ବତୀ । ତାଙ୍କର ତାତ ହିମାଳୟ ଓ ତାହାର ଗର୍ତ୍ତ ବା ଗହ୍ଵର ।"

ସେହିପରି "ଜଳଧୃତ ମାଟି, ତା ସୁତ—ପର୍ବତ, ତା ସୁତା—ନିର୍ଝରଣୀ, ତା ସୁତ—ପୁଷ୍କରିଣୀ, ତା ସୁତ ପଙ୍କ, ତା ସୁତ ପଦ୍ମ, ତା ସୁତ ବ୍ରହ୍ମା, ତା ସୁତ ପୁଲସ୍ତ୍ୟ ଋଷି, ତ ସୁତ ବିଶ୍ରବା, ତା ସୁତ ରାବଣ" ଅର୍ଥାତ୍ "ରାବଣ ସୀତାଙ୍କଠାରେ ଧୃଷ୍ଟ ଆଚରଣ କରି ନିଜର ପ୍ରାଣ ଦେଲା ।" ଏହି ସାମାନ୍ୟ କଥାକୁ କବି କ୍ଲିଷ୍ଟତାର ନିଗଡ଼ରେ ଆବଦ୍ଧ କରି ସ୍ଵ-ଶବ୍ଦ ପାଣ୍ଡିତ୍ୟର ପରିଚୟ ଦେଇଅଛନ୍ତି । ବିଦଗ୍ଧ ଚିନ୍ତାମଣିର ରଚନାଶୈଳୀ କିପରି ହେବ; ତାହାର ନିର୍ଦ୍ଦିଷ୍ଟ ସୂଚନା କବି ମଧ୍ୟ ଆଗରୁ ଉଲ୍ଲେଖ କରିଅଛନ୍ତି । ଏହି ପ୍ରକାର ବିଭିନ୍ନ ରଚନାଶୈଳୀ କବି କାବ୍ୟରେ ଗ୍ରହଣ କରିବାର ତାତ୍ପର୍ଯ୍ୟ ସେ ନିଜେ ହିଁ ବ୍ୟକ୍ତ କରି କହିଅଛନ୍ତି—

"ଥୋକେ ସ୍ଥଳ ହେବ ଦ୍ରାକ୍ଷା ଗୁଡ଼କୃତ ପାକ<br>
ଥୋକେ ପାକ ନାରିକେଳ ଖର୍ଜୁର ରୋଚକ । (୧-୩୩)<br>
ଦ୍ରବ୍ୟ ଅଦ୍ରବ୍ୟ ଭାଷାରେ ପଦ ହେବ ସିଦ୍ଧି<br>
ଦେଖି ମହାଜନ ମାର୍ଗ ପରମ୍ପରା ବିଧି ।" (୧-୩୪)

କବି ତାଙ୍କର କାବ୍ୟରେ ଚାରିପ୍ରକାର ରଚନାଶୈଳୀର ସୂଚନା ଦେଇ-ଅଛନ୍ତି । ଯଥା—( ) ଦ୍ରାକ୍ଷାପାକ (ସର୍ବାଂଶ କୋମଳ, ମଧ୍ୟରେ ଅଳ୍ପ କଠିନ), (୨) ଗୁଡ଼ପାକ (ସର୍ବାଂଶ କୋମଳ ଏବଂ ଶ୍ଳିଷ୍ଟ); (୩) ନାରିକେଳ ପାକ (ବାହାର କଠିନ, ଭିତର କୋମଳ ଓ ରସଯୁକ୍ତ), (୪) ଖର୍ଜୁରପାକ (ବାହାର କୋମଳ ଓ ଭିତର ଅତି କଠିନ) ।

କେଉଁଠି ବିଦଗ୍ଧ ଚିନ୍ତାମଣିରେ ପଦାବଳୀ ସରସ ଏବଂ ମଧୁର, କେଉଁଠି ସର୍ବାଂଶ କୋମଳତୁଲ୍ୟ ପ୍ରତୀତ ହୋଇଥାଏ; କିନ୍ତୁ ଭିତରେ ଭାବ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଅଟେ । ବିଦଗ୍ଧ ଚିନ୍ତାମଣି କାବ୍ୟର ରଚନାଶୈଳୀ ଏହିପ୍ରକାର ନାନା ବୈଚିତ୍ର୍ୟରେ ସୁଶୋଭିତ ।

ପୂର୍ବୋକ୍ତ କ୍ଲିଷ୍ଟ ପଦାବଳୀ ଶ୍ରମଯୁକ୍ତ ରଚନା—ଶବ୍ଦଶାସ୍ତ୍ରରେ ପାଣ୍ଡିତ୍ୟ ନ ଥିଲେ ଏ ପ୍ରକାର କ୍ଲିଷ୍ଟ ପଦରଚନା କରିବା ସହଜ ନୁହେଁ । ଏ ପ୍ରକାର ପଦରଚନା ସେ ଯୁଗର ସାହିତ୍ୟିକ ରଚନାଶୈଳୀର ବୈଶିଷ୍ଟ୍ୟ ଏବଂ ବଡ଼କବି

ହେବାର ଗୌରବ ତାହିଁରେ ନିହିତ ଥିଲା । ସେଥିପାଇଁ ଅଭିମନ୍ୟୁ କହିଛନ୍ତି ଭାବ ତଥା ଅର୍ଥ ପରିସ୍ଫୁଟନରେ ଦନ୍ତ ନ ଥିବା ବ୍ୟକ୍ତି ଟାଣି ଚଣା ଚର୍ବଣ କଲି ପରି ଧୁ ରୁକ୍ଷ ବୈଷ୍ଣବମାନଙ୍କ ପ୍ରତି ଅନୁରକ୍ତି ନ ଥିବା ବ୍ୟକ୍ତିର ଗର୍ବ ଏହି କାବ୍ୟ ବେଳେ ବେଳେ ଭାଙ୍ଗି ଦେଇଥାଏ । ତେଣୁ କେବଳ କଠିନ ପଦାବଳୀର ସମାହାର ଯେ ବିଦଗ୍ଧ ଚିନ୍ତାମଣିରେ ରହିଛି ତାହା ନୁହେଁ, ତାହିଁପରି ଭାଗବତ କ୍ଳିଷ୍ଟତା ମଧ୍ୟ ସ୍ଥଳବିଶେଷରେ ରହିଛି ।

## (ଖ) ବିଦଗ୍ଧ ଚିନ୍ତାମଣିରେ ଆଲଙ୍କାରିକତା—

ଅଭିମନ୍ୟୁଙ୍କର ବହୁ ପୂର୍ବରୁ ଉପେନ୍ଦ୍ର ତାଙ୍କର ଲାବଣ୍ୟବତୀ କାବ୍ୟରେ କହିଛନ୍ତି—

> "ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଚାରଇ
> ଏଣୁ କରିଥିବ ଅଲଙ୍କାର ଯୁକ୍ତ ହୋଇ ।"

ଅଭିମନ୍ୟୁଙ୍କ କାବ୍ୟରୁ ମଧ୍ୟ ଏହି ବାଣୀର ପ୍ରତିଧ୍ୱନି ଉତ୍ତମ ରୂପେ ଅନୁଭୂତ ହୋଇଥାଏ । ଅଭିମନ୍ୟୁ ମଧ୍ୟ ତାଙ୍କ କାବ୍ୟରେ ଲେଖିଛନ୍ତି—

> "କବି ବଚନ ଅଳଂକୃତ ହେଉ
> ଆନ୍ତ ନେହ ତାପ ପାପ ପଳାଉ ।" (୫୯।୪)
> ପୁଣି—"ସୁହାଗରେ ଭୋଗ ହେବ ନାଗରମଣିକି
> ଅଳଂକାରରେ ନିପୁଣ ବୋଲି ନ ଜାଣ କି ଗୋ ।" (୮୫।୫୧)

ଏହି ସମସ୍ତ ପଦରୁ ଅଭିମନ୍ୟୁଙ୍କ ଅଲଙ୍କାରପ୍ରିୟତା ଜଣାଯିବା ବ୍ୟତୀତ ସମଗ୍ର କାବ୍ୟ ଯେ ଏକ ଆଳଂକାରିକ କାବ୍ୟ, ତାହା କହିବା ବାହୁଲ୍ୟ ହେବ । ଅଳଂକାର ସାଧାରଣତଃ ତିନି ପ୍ରକାରର, ଯଥା—ଶବ୍ଦାଶ୍ରିତ, ଅର୍ଥାଶ୍ରିତ ଓ ଶବ୍ଦାର୍ଥ ଉଭୟାଶ୍ରିତ । ଯାହା ଶବ୍ଦକୁ ଅଳଂକୃତ କରିଥାଏ, ତାହାକୁ ଶବ୍ଦାଲଙ୍କାର ଓ ଯାହା ଅର୍ଥକୁ ଅଳଂକୃତ କରି ତାହାର ଚମତ୍କାରିତା ପ୍ରତିପାଦନ କରିଥାଏ, ତାହାକୁ ଅର୍ଥାଳଂକାର କୁହାଯାଏ । ବକ୍ରୋକ୍ତି, ଅନୁପ୍ରାସ, ଯମକ, ଶ୍ଳେଷ ଓ ପୁନରୁକ୍ତ ବଦାଭାସ ପ୍ରଭୃତି ଶବ୍ଦାଳଂକାର ଓ ଉପମା, ରୂପକ ଉତ୍ପ୍ରେକ୍ଷା ପ୍ରଭୃତି ଅର୍ଥାଲଙ୍କାର ଅଛି । ବିଦଗ୍ଧ ଚିନ୍ତାମଣି କାବ୍ୟରେ ଉଭୟ ଅଲଙ୍କାରବାହୁଲ୍ୟ ପରିଦୃଷ୍ଟ ହୋଇଥାଏ । ଅଲଙ୍କାରବାହୁଲ୍ୟ ସାହିତ୍ୟର ସ୍ରଷ୍ଟା ହେଉଛନ୍ତି ଉପେନ୍ଦ୍ର ଏବଂ ତାଙ୍କର ପଛା ପରବର୍ତ୍ତୀ କବିମାନେ ଅନୁସରଣ କରି ମଧ୍ୟଯୁଗର ଓଡ଼ିଆ ସାହିତ୍ୟକୁ ଅଲଙ୍କାରରେ ଭାରାକ୍ରାନ୍ତ କରି ପକାଇଲେ । ଏହି ଆଲଙ୍କାରିକତା ରୀତିଯୁଗ କାବ୍ୟର କ୍ଳିଷ୍ଟତାକୁ ମଧ୍ୟ ଯଥେଷ୍ଟ ପରିମାଣରେ ବଢ଼ାଇଦେଲା ।

ଅଭିମନ୍ୟୁ ତାଙ୍କ ବିଦଗ୍ଧ ଚିନ୍ତାମଣି କାବ୍ୟରେ ଏହି ଭଙ୍ଗୀୟ ଅଲଙ୍କାର ବହୁଳ ଭାବରେ ପ୍ରୟୋଗ କରିବାର ଲକ୍ଷ୍ୟ କରାଯାଇଥାଏ । ତହିଁରୁ କେତେକ ଉଦାହରଣ ନିମ୍ନରେ ଦିଆଗଲା ।

ଆଦ୍ୟଯମକ—"ଧୀରେ ଧୀରେ ଶୁଣ ଏ ଉତ୍ତରୁ ଚରିତ
ପୁଣ୍ୟ ପୁଣ୍ୟଜନେ କଲେ ଯସାରୁ ହିତ ।" (ଛା. ୧।୧)

ଅନ୍ତ୍ୟାନୁପ୍ରାସ—"କୃଷ୍ଣ ପଉଗଣ୍ଡ କାଳ ଅନ୍ତରେ
ନବକିଶୋର ବୟ ଆଗତରେ ।
ଶୋଭା ବିଚେଷ୍ଟା ଯାହାର ଭିତରେ
ଦୀପ୍ତି ବଳି ହେଲେ ସ୍ଥାନ ଅନ୍ତରେ ।" (ଛା. ୩।୧)

ଅ ପୂର୍ବାନୁପ୍ରାସ—"ଅପୂର୍ବାନୁପ୍ରାସ ଏ ଛାନ୍ଦ ରସ ।
ଅନେକ ଭାବରେ ଯେଣଂ ହେ ବିଦୂଷ ।" (ଛା. ୫।୧)

ଆ ପୂର୍ବାନୁପ୍ରାସ—"ଆନନ୍ଦେ କୋବିଦେ ପିଅ ଏ ରସେ ଶ୍ରବଣେ
ଆହ୍ଲାଦକନ୍ଦ ଶ୍ରୀରାଧିକା ଶ୍ରୀନାମ ଶ୍ରବଣେ ।" (ଛା. ୬।୧)

ଇ ପୂର୍ବାନୁପ୍ରାସ—"ଇଷ୍ଟ ଅଭୀଷ୍ଟ କରି କେହି ମିତ୍ରକୁ ମୁକ୍ତ ଯିବ ଧନୀ
ଇତର କଥାକୁ ଏ ଶାସ୍ତ୍ରୁ ନନ୍ଦେ ଗଣ୍ଡନ୍ତ କି ଯେନ ।" (ଛା. ୭।୬)

ପ୍ରାନ୍ତାନୁପ୍ରାସ—"ବଚନ ସୁଖ ହୋଏ ତାହା ଶ୍ରବଣେ
ଲାଳସ ହୋଏ କୋଟି କୋଟି ଶ୍ରବଣେ ।" (ଛା. (୯।୨)

ଆଦ୍ୟପ୍ରାନ୍ତାନୁପ୍ରାସ—"ଧୀରେ ଶୁଣ ଏ ଉତ୍ତରୁ ରସ
ଧୀରେ ଭଲି ବିଶାଖା ହୋଇ ବିରସ ।" (ଛା. ୧୦।୧)

ମଧ୍ୟ ଯମକ—"କେବଳ ରାଧାର ନାମ ନିରାଧାର ମୋର ଆଧାର ଆଜ ଦିନୁ
ପୂଜିବ ଶଙ୍କର ବୋଲିବ ଶଙ୍କର କରିବ କିଂକର ହେ ସୁତନୁ ।"
(ଛା, ୧୨।୧୬)

ଆଦ୍ୟ ଯମକ—"ଶ୍ରବଣେ ଧୀରେ ଶ୍ରବଣେ ଧୀରେ ଲଭିବ ମହାନନ୍ଦ
ଭାବି ନଚେତନ ଭବାନୀ ରତି ହୋଇ ପରମାନନ୍ଦ ।" (ଛା. ୧୪।୧)

ନିଯ୍ମ ଯମକ—"ଧୀରେ ଧୀରେ ଧୀରେ ଯେନ ଏଥି ଦେଇ ଶ୍ରୁତି
ଧର ଧର ଧରଣୀ ଶୋଭି କି କହୁଛନ୍ତି ।" (ଛା. ୨୦)

ସିଂହାବଲୋକନ—'ଶୟନରେ କି ମୁଁ ସପନେ ଦେଖିଲି ନାଗରୀ ମୁକୁଟମଣି
କୁଟମଣି କି କି କରି କୋଳେ ଧରିଥିଲି ସୁହାର ସେକ୍ଷଣି ।"
(ଛା ୩୩।୬)

ବିଦଗ୍ଧ ଚିନ୍ତାମଣିର ୩୪, ୩୫, ୩୬, ୮୫ ପ୍ରଭୃତି ଛାନ୍ଦରେ କବି ଯେଉଁ ଆଲଙ୍କାରିକ କୃତିତ୍ୱ ଦେଖାଇଛନ୍ତି, ତାହା ତାଙ୍କ ଅଲଙ୍କାର ଜ୍ଞାନର ଭୂୟସୀ ବ୍ୟୁତ୍ପତ୍ତି ପ୍ରମାଣ କରାଇଥାଏ । ଛାନ୍ଦର ଗୋଟିଏ ଗୋଟିଏ ପଦରେ ନୂଆ ନୂଆ

ଅଳଙ୍କାର ଖଞ୍ଜାଯାଇଛି । ସଂସ୍କୃତ ଓ ଭଞ୍ଜୀୟ ଅଳଙ୍କାରଶାସ୍ତ୍ରରେ ଗଭୀର ବ୍ୟୁତ୍ପତ୍ତି ନ ଥିଲେ ତାହା ବୁଝିବା କଷ୍ଟକର ବ୍ୟାପାର । ଯେପରି ୫୪ ଛାନ୍ଦରେ ୪୫ଟି ପଦ ରହିଛି ଏବଂ ପ୍ରତ୍ୟେକ ପଦରେ ଗୋଟିଏ ଗୋଟିଏ ନୂଆ ନୂଆ ଅଳଙ୍କାର ଗ୍ରଥିତ ହୋଇଅଛି । ଉଦାହରଣ ସ୍ୱରୂପ—୩୪ ଛାନ୍ଦରେ ବିରୋଧ ଭାସ, ମହାରୂପକ, ମହାମହାରୂପକ, ସଭଙ୍ଗଶ୍ଳେଷ, ଅଭଙ୍ଗଶ୍ଳେଷ, ଭଙ୍ଗାଭଙ୍ଗଶ୍ଳେଷ, ପ୍ରକଟିତ ଗୂଢ଼ ଅର୍ଥ, ଲୁପ୍ତମିତ ତିନି ଅର୍ଥ, ବର୍ଜିତ ଶ୍ଳେଷାନ୍ତର ଶ୍ଳେଷ, ଲକ୍ଷଣା ଶ୍ଳେଷ, ବ୍ୟଞ୍ଜନା ଶ୍ଳେଷ, ଅପ୍ରୟୋଜନାର୍ଥ ଅବିନା, ସବୋଷ୍ଠକ, ନିରୋଷ୍ଠକ, ସ୍ୱର ନିରୋଷ୍ଠକ; ପୁନରୁକ୍ତ ବଦାଭାସ, ଲକ୍ଷଣା, ଉପମା ଅଦ୍ଭୁତୋପମା, ଅନ୍ତର୍ଲାପି, ବହିର୍ଲାପି; ଶୃଙ୍ଖଳା ସଂହାରବେଳେକେ: ମଣ୍ଡୂକପ୍ଲୁତ ଶୃଙ୍ଖଳା, ଗଙ୍ଗାସୋତାଧିକାର ଶୃଙ୍ଖଳା ସର୍ବାଙ୍ଗପାଦ ଶୃଙ୍ଖଳା ପ୍ରଭୃତି ବହୁବିଧ ଅଳଙ୍କାର ଦିଆଯାଇଛି । ସେ କାବ୍ୟର ପ୍ରଥମ ଛାନ୍ଦରେ ମଧ୍ୟ କହିଛନ୍ତି—

> "ଯମକାଦି ଚିତ୍ରକାବ୍ୟ ପ୍ରବନ୍ଧ ପ୍ରବନ୍ଧ
> ଯଥା ଜାତ ଧନ୍ଦା ଏଡି ବୁଧ ମନବୋଧ ।" (ଛା. ୧।୨୪)

କବିଙ୍କ ଆଳଙ୍କାରିକ ଜ୍ଞାନର ସମ୍ୟକ ପରିଚୟ ପାଇଁ ଆମ୍ଭେ ଏଠାରେ ଏହିସବୁ ଅଳଙ୍କାରରୁ କେତେକ ଚିତ୍ତାକର୍ଷକ ସୁନ୍ଦର ଅଳଙ୍କାରର ଉଦାହରଣ ଦେଲୁ—

ବିରୋଧାଭାସ—"କାନ୍ତଗତ ଅଛୁ ତ ନାହିଁ ତ କାନ୍ତଗତ
ଇଚ୍ଛୁଇ ମୂରତ ତ ନ ଇଚ୍ଛଇ ମୁଁ ରତ ।" (ଛା ୩୪।୨)

ଅବିନା—"ମଦମତ୍ତ ଉନ୍ମତ୍ତ ଗଜମସ୍ତକ ବତି
ଉଲଟ ତଳବ ରମ୍ୟ ମଣ୍ଡପତ ସତ ।
ଦନ୍ତଶଠ ବରକତ ବନଧର ରହି
ପ୍ରକଟ କନକ ଘଟ ଘଟନତ ହନ୍ତି ।" (ଛା. ୩ ।୧୫)

ଅଦ୍ଭୁତୋପମା—"ଲତାରେ ଫଳିଛି କେନେ ଶ୍ରୀଫଳ ସୁଫଳ
କମଳରେ ବହୁଅଛି କାଳିନ୍ଦୀର ଜଳ ।
ବିମ୍ବର ଅରୁଣ ଅରୁଣରୁ ବିମ୍ବ ଜାତ
ତାହୁଁ କମ୍ପୁ କମ୍ପୁ ସ୍ୱେଦ ଦେଖି ବିକଳିତ ।" (ଛା. ୩୫।୩୦)

ମହାଯମକ—"ରମ୍ଭା ଉରୁ କେଶୀ କାର ଆଣି କି ଲେକରେ
ରମ୍ଭା ଉରୁ କର୍ଷିବାର ଆଣି କି ଲେକରେ ।" (ଛା. ୩୨)

ସର୍ବଯମକ—'ବିଭବରେ ହରବର ସୁମନର ଶରେ
ବିଭବରେ ହରବର ସୁମନରସରେ ।" (ଛା.୩୩)

ମଣ୍ଡୂକପ୍ଲୁତ ଶୃଙ୍ଖଳା—"ବରବାରଣଗମନା ମନାଉଛି ଅନା
ଅନାୟତ୍ତରେ ମୁମୁହିଁ ମୁହିଁ ତ ବିମନା ।

ମନାକ କରୁଣାକର କରକଦଶନା
ସନାଥ ହେବ ନରଗ ରତ ପାଇ ଘିନା ।" (ଛ. ୪୯)

ବିଦଗ୍ଧ ଚିନ୍ତାମଣିର ୩୭ ଛାନ୍ଦ ମଧ୍ୟ ଅନ୍ୟ ଏକ ଆଲଙ୍କାରିକ ଛାନ୍ଦ । ଏହି ଛାନ୍ଦରେ କବି ଯମକ ଅଲଙ୍କାରର ଏପରି ବିଶଦ ବିଭାଗ କରିଅଛନ୍ତି ଯେ ଏ ପ୍ରକାର ଯମକ ଅଲଙ୍କାର ଭଞ୍ଜସାହିତ୍ୟରେ ମଧ୍ୟ ଦେଖାଯାଏ ନାହିଁ । ଉପେନ୍ଦ୍ର 'ଯମକରାଜ ଚଉତିଶା' ନାମକ ଯମକ କାବ୍ୟ ଲେଖିଥିଲେ ହେଁ ତହିଁରେ ଏ ପ୍ରକାର ବୈଚିତ୍ର୍ୟ ପରିଲକ୍ଷିତ ହୋଇ ନ ଥାଏ । ଯମକ ଅଲଙ୍କାର ପ୍ରୟୋଗରେ କବି ସଂସ୍କୃତ ଅଲଙ୍କାରଶାସ୍ତ୍ରକୁ ମଧ୍ୟ ଟପିଯାଇଛନ୍ତି । ଏଥିରେ ଯମକ ଅଲଙ୍କାରର ବିଭାଗରେ ଏକାକ୍ଷ୍ୟରାଦ୍ୟ ଯମକ, ଦ୍ୱିତ୍ର୍ୟବର୍ଣ୍ଣାଦ୍ୟ ଯମକ, ଏକପଦ ଆଦ୍ୟଯମକ, ଦ୍ୱନ୍ଦାଦ୍ୟ ଯମକ, ଦରୁଣ୍ଡ ଯମକ, ଯୁଗ୍ମ ଯମକ, ଅନୁଛନ୍ଦ ଯମକ, ସମଗ୍ର ଯମକ, ଆଦ୍ୟନ୍ତ ଯମକ, ନିବୃତ୍ତ ଯମକ, ସାର ଯମକ, ସମପାଦ ଯମକ ଓ ଧ୍ୱନିଯମକ ପ୍ରଭୃତି ଅନେକ ଯମକ ଅଲଙ୍କାର ଦେଇଅଛନ୍ତି । ଏଥିରୁ ପାଠକମାନଙ୍କ ଗୋଟିଏ ଦୁଇଟି ସୁନ୍ଦର ଓ ସରଳ ଯମକ ଅଲଙ୍କାରର ଉଦାହରଣ ଦିଆଗଲା ।

ଏକାକ୍ଷରାଜ୍ୟ ଯମକ—

ଝଲମୁଖୀ ନଳିନ ଝଷଜିତ ନୟନ ଝଷକେତନ ଶରଧର
ଝରଝର ନିରତ ଝରୁଥାଇ ଅମୃତ ଝଟକ ହାସରେ ତୋହର ରେ ।
ଝଲକାଙ୍ଗି । ଝଙ୍କାର ଝାଣାଜିଣା ଗିର । ଝନନ କଙ୍କିଣୀ ମଧୁର ।
ଝର୍ଝିର ସୁକ୍ଷ୍ମାଂଶୁକ ଝଲକାଇ ଏଦିକ ଝଟତ ମୋହେ ତନପୁର ରେ ।୨।

ସମଗ୍ର ଯମକ—'କୁନ୍ଦର କୋରକର ସୁନ୍ଦର ସୁରଦର ହୃଦର ହରପର ଶର
ଭଙ୍ଗୀର ପରସ୍ପର ସଞ୍ଚାର ଗିର ବର ଯୋଗର ଧୀର ପୁର ଗୈର ।"୧୩।

ସାର ଯମକ—"ନାଗ ରମଣୀଗଣ ନାଗରମଣୀ ଗଣନା ନୋହି ଦେଇଣ ପୂଜିବେ
ସଦାଶିବ ଗଉରୀସଦାଶିବ ଗଉରୀ ଦେଖିଲକ୍ଷଣୀ ତେଜି ଦେବେ ଶଣଦୃଷ୍ଟି ।
ଉରୁବଶୀ ଉରୁବସିକ । ତିଲୋତ୍ତମା ତିଲୋତ୍ତମା କି
କଳାକର ସୁନ୍ଦର କଳାକର ସୁନ୍ଦରୀ ପାଇବ ଶ୍ରୀମୁଖ ବଲ୍ଲେକ ।" ।୧୭।

ଅଭିମନ୍ୟୁ ଶବ୍ଦାଳଙ୍କାର ପ୍ରୟୋଗରେ ଯେତେ ବୈଚିତ୍ର୍ୟ ସୃଷ୍ଟି କରିଛନ୍ତି, ସେହି ଅନୁପାତରେ ସେ ଅର୍ଥାଳଙ୍କାର ପ୍ରୟୋଗ କରି ନାହାନ୍ତି । ମଧ୍ୟଯୁଗ ଓଡ଼ିଆ ସାହିତ୍ୟରେ ଏହି ଆଲଙ୍କାରିକତାକୁ ଲକ୍ଷ୍ୟକରି ଆର୍ତ୍ତବଲ୍ଲଭ ମହାନ୍ତି କହିଅଛନ୍ତି, "ଅର୍ଥାଳଙ୍କାର ଓ ଶବ୍ଦାଳଙ୍କାରମାନଙ୍କ ପ୍ରୟୋଗ ଯେପରି ଉପେନ୍ଦ୍ରଙ୍କ କାବ୍ୟମାନଙ୍କରେ ପରିଦୃଷ୍ଟ ହୁଏ, ତାହା ଅନ୍ୟାନ୍ୟ ଓ ସଂସ୍କୃତ ତଥା ପ୍ରାକୃତ କାବ୍ୟମାନଙ୍କରେ ପରିଦୃଷ୍ଟ ହୁଏନାହିଁ ।" (ଲାବଣ୍ୟବତୀ ମୁଖବନ୍ଧ, ପୃ. ୯୧) । ସାହିତ୍ୟଶାସ୍ତ୍ର ଅନୁଯାୟୀ

ଧ୍ୱନ୍ୟାତ୍ମକ କାବ୍ୟ ଉତ୍ତମୋତ୍ତମ, ଗୁଣୀଭୂତ ବ୍ୟଙ୍ଗ୍ୟାତ୍ମକ କାବ୍ୟ ଉତ୍ତମ, ଅର୍ଥାଳଙ୍କାରଯୁକ୍ତ କାବ୍ୟ ମଧ୍ୟମ ଓ ଶବ୍ଦାଳଙ୍କାରଯୁକ୍ତ କାବ୍ୟ ବା ଚିତ୍ରକାବ୍ୟ ଅଧମ କାବ୍ୟ ଭାବରେ କଥିତ; କିନ୍ତୁ ଯେଉଁ କବିଙ୍କର ଲେଖାରେ ଏହି ଚାରିଗୋଟି ବୈଶିଷ୍ଟ୍ୟ ନିହିତ ଅଛି, ସେହି କାବ୍ୟ ଶ୍ରେଷ୍ଠକାବ୍ୟ ଭାବରେ ବିବେଚିତ ହୋଇଥାଏ । ଅଭିମନ୍ୟୁଙ୍କ କାବ୍ୟରେ ଅଳ୍ପାଧିକ ପରିମାଣରେ ଏହି ଚାରିଗୋଟି ବୈଶିଷ୍ଟ୍ୟ ନିହିତ ଥିବାର ପରିଲକ୍ଷିତ ହୋଇଥାଏ ।

ଅଭିମନ୍ୟୁଙ୍କର ଅଳଙ୍କାରଜ୍ଞାନ ପ୍ରାଚୀନ ସଂସ୍କୃତ ଅଳଙ୍କାର ଗ୍ରନ୍ଥ, ପ୍ରାଚୀନ ଓଡ଼ିଆ ସାହିତ୍ୟ, ବିଶେଷଭାବରେ ଭକ୍ତକାବ୍ୟ ଅଧ୍ୟୟନ ଉପରେ ସୁପ୍ରତିଷ୍ଠିତ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗର କବିଗଣ ଭୋଜରାଜଙ୍କର 'ସରସ୍ୱତୀ କଣ୍ଠାଭରଣ', ବିଶ୍ୱନାଥ କବିରାଜଙ୍କର 'ସାହିତ୍ୟ ଦର୍ପଣ' ଓ ବିଦ୍ୟାଧରଙ୍କର 'ଏକାବଳୀ' ଓ ଅନ୍ୟାନ୍ୟ ଅଳଙ୍କାର ଗ୍ରନ୍ଥସମୂହ ଚର୍ଚ୍ଚା କରୁଥିଲେ । ପୂର୍ବୋକ୍ତ ଆଳଙ୍କାରିକମାନଙ୍କ ମଧ୍ୟରୁ ଶେଷ ଦୁଇ ଜଣ ଆଳଙ୍କାରିକ ପାଣ୍ଡିତ୍ୟ, ଯଥା—ବିଶ୍ୱନାଥ କବିରାଜ (ଖ୍ରୀ: ୧୩୬୦—୧୪୧୪) ଓ ବିଦ୍ୟାଧର (ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ଶେଷଭାଗ ଓ ୧୪ ଶତାବ୍ଦୀର ପ୍ରଥମ ପାଦ) ଓଡ଼ିଶାର ବିଶିଷ୍ଟ ଅଳଙ୍କାର ପଣ୍ଡିତ ଅଟନ୍ତି । ବହୁ ପ୍ରାଚୀନକାଳରୁ ଓଡ଼ିଶାରେ ଅଳଙ୍କାର ସାହିତ୍ୟର ଚର୍ଚ୍ଚା ଥିଲା ଏବଂ ଓଡ଼ିଶାର ସ୍ଥାପତ୍ୟ ତଥା ସାହିତ୍ୟରେ ଏହାର ପ୍ରଭାବ ପଡ଼ିଥିଲା ।

ଓଡ଼ିଆ ଜାତି କଳାପ୍ରିୟ ଏବଂ କଳାର ଚରମୋତ୍କର୍ଷ ଓଡ଼ିଶାର ସ୍ଥାପତ୍ୟ ତଥା ସାହିତ୍ୟରେ ପରିଲକ୍ଷିତ ହୋଇଥାଏ କହିବା ବାହୁଲ୍ୟ ମାତ୍ର । ଉପେନ୍ଦ୍ରଙ୍କର ପଦାଙ୍କ ଅନୁସରଣ କରି ଅଭିମନ୍ୟୁ ତାଙ୍କର କାବ୍ୟରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ପ୍ରୟୋଗ କରିଥିଲେ ମଧ୍ୟ ତାହା ଉପେନ୍ଦ୍ରଙ୍କ ଅପେକ୍ଷା ଅନେକାଂଶରେ ସରଳତାକୁ ଅବଲମ୍ବନ କରିଅଛି ଓ କାବ୍ୟର ରସସୃଷ୍ଟିରେ ବ୍ୟାଘାତ ପ୍ରଦାନ କରିନାହିଁ । ଉପେନ୍ଦ୍ରଙ୍କ ପରେ ଓଡ଼ିଆ ସାହିତ୍ୟରେ ଦ୍ୱିତୀୟ ଶ୍ରେଷ୍ଠ ଆଳଙ୍କାରିକ କବି ହେଉଛନ୍ତି ଅଭିମନ୍ୟୁ ଓ ଏହା ବିଦଗ୍ଧ ଚିନ୍ତାମଣିର ପାଠରୁ ପ୍ରତିପନ୍ନ ହୋଇଥାଏ ।

## ବିଦଗ୍ଧ ଚିନ୍ତାମଣିର ଭାଷା—

ଆଗରୁ କୁହାଯାଇଛି ଯେ ଏହି କାବ୍ୟ 'ଦେବ୍ୟ-ଅଦେବ୍ୟ ଭାଷା'ର ମିଶ୍ରଣରେ ଲେଖାଯାଇଛି ଅର୍ଥାତ୍ କବି ସଂସ୍କୃତ ପ୍ରଭାବକୁ ଏଡ଼ି ନ ପାରି କ୍ରମେ ମୌଳିକ ଅର୍ଥାତ୍ ସରଳଭାଷାକୁ କାବ୍ୟର ଅଙ୍ଗୀଭୂତ କରିଅଛନ୍ତି । ଓଡ଼ିଶାରେ ମରହଟ୍ଟା ରାଜତ୍ୱ ସମୟରେ ଅଭିମନ୍ୟୁଙ୍କର ଆବିର୍ଭାବ ଘଟିଥିଲା ଏବଂ ତାହା ପୂର୍ବରୁ ଆଫଗାନ ଓ ମୋଗଲ ରାଜତ୍ୱ ଚାଲିଯାଇଥିଲା । କବିଙ୍କ ସମୟରେ କୋର୍ଟ କଚେରୀରେ ଫାର୍ସି ଓ

ଓଡ଼ିଆ ଏହି ଦ୍ୱିବିଧ ଭାଷା ପ୍ରଚଳିତ ଥିଲା ଏବଂ କେତେକ ସନନ୍ଦ ପ୍ରଭୃତିରୁ ମରହଟ୍ଟୀ ଭାଷା (ମୋଡ଼ିଲିପି) ଓଡ଼ିଶାରେ ପ୍ରଚଳିତ ଥିବାର ଜଣାପଡ଼ିଥାଏ । ତେବେ ଯାହା ହେଉ ନା କାହିଁକି ଏଠାରେ କହିବାର କଥା ଯେ ଅଭିମନ୍ୟୁ ତାଙ୍କର ପୂର୍ବବର୍ତ୍ତୀ କବି ଦୀନକୃଷ୍ଣ ଓ ଉପେନ୍ଦ୍ରଙ୍କ ପରି ଭାଷା ପ୍ରୟୋଗରେ ତେତେ ରକ୍ଷଣଶୀଳ ନ ଥିଲେ । ଆର୍ତ୍ତବଲ୍ଲଭ ମହାନ୍ତି ଲାବଣ୍ୟବତୀର ମୁଖବନ୍ଧରେ ଉପେନ୍ଦ୍ର ତଥା ଅଭିମନ୍ୟୁଙ୍କ କାବ୍ୟର ଭାଷା ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରି ପ୍ରାଚୀନ ଓଡ଼ିଆଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦ କରିଅଛନ୍ତି । ବିଜୟଚନ୍ଦ୍ର ମଜୁମଦାର ଅଭିମନ୍ୟୁଙ୍କ ସମ୍ବନ୍ଧରେ ମତପ୍ରକାଶ କରି କହନ୍ତି ଯେ, "ଅଭିମନ୍ୟୁ ଜଣେ ଉଚ୍ଚଶିକ୍ଷାସମ୍ପନ୍ନ ବ୍ୟକ୍ତି ଥିଲେ । ସେ ସଂସ୍କୃତ, ମରହଟ୍ଟୀ, ହିନ୍ଦୀ ଓ ବଙ୍ଗଳା ଜାଣିଥିଲେ । ଅଳଙ୍କାର ବିନ୍ୟାସରେ ସେ କେତେକ ସ୍ଥଳରେ ଉପେନ୍ଦ୍ରଙ୍କ ତୁଳ୍ୟ ନ କରି ଖାଣ୍ଟି ସରଳ ଓଡ଼ିଆଭାଷାରେ ତାଙ୍କ କାବ୍ୟମାନ ରଚନା କରିଥିଲେ ।" ବିଜୟଚନ୍ଦ୍ର ଆହୁରି ମଧ୍ୟ କହିଅଛନ୍ତି ଯେ ସେ ଉପେନ୍ଦ୍ରଙ୍କ ପରି ବ୍ୟାକରଣରେ ଅନଭିଜ୍ଞ ନ ଥିଲେ ।

କେତେକ ଆଧୁନିକ ସାହିତ୍ୟିକ ଅଭିଯୋଗ କରନ୍ତି ଯେ, ଉପେନ୍ଦ୍ର ତଥା ଅଭିମନ୍ୟୁଙ୍କ କାବ୍ୟମାନଙ୍କରେ ବ୍ୟାକରଣଗତ ଦୋଷ ପରିଲକ୍ଷିତ ହୁଏ; କିନ୍ତୁ ସେସବୁ ପ୍ରାଚୀନ ଶବ୍ଦାବଳୀକୁ ଅଶୁଦ୍ଧ ବୋଲି କହିବା ସେମାନଙ୍କ ଭାଷାତତ୍ତ୍ୱ ଜ୍ଞାନର ବିମୁଖତା ପ୍ରତିପାଦନ କରିଥାଏ ମାତ୍ର । ଏହି ଉଦ୍ଦେଶ୍ୟରେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଲାବଣ୍ୟବତୀର ମୁଖବନ୍ଧରେ କହିଛନ୍ତି, "ଓଡ଼ିଆଭାଷା ଓ ସାହିତ୍ୟ, ସଂସ୍କୃତ ଭାଷା ଓ ସାହିତ୍ୟ ପରି ସ୍ଥିର ଓ ଅପରିବର୍ତ୍ତନୀୟ ନୁହେଁ । ଉତ୍କଳଭାଷା ଓ ସାହିତ୍ୟ ଜୀବନ୍ତ ଓ ବର୍ଦ୍ଧିଷ୍ଣୁମାନ । ତହୁଁ ଭାଷା ଓ ସାହିତ୍ୟକୁ ବ୍ୟାକରଣ ଅନୁସରଣ କରିବ ଦୁଃଖର କଥା, ପାଶ୍ଚାତ୍ୟ ରୀତିର ଶିକ୍ଷା ପ୍ରବର୍ତ୍ତନ ପରେ ଓଡ଼ିଆ ଭାଷା ଗୋଟିଏ ଅଭିନବ ତଥା ବିକୃତ ରୂପ ପ୍ରାପ୍ତ ହେଲା । ସେ ସମୟରେ ଯେଉଁମାନେ ନୂତନ ଧରଣର କାବ୍ୟକବିତା ଓ ପ୍ରବନ୍ଧାଦି ଲେଖିଲେ, ସେମାନେ ଓଡ଼ିଆ ଭାଷାର ପ୍ରକୃତି ଭଲଭାବରେ ଜାଣି ନ ଥିଲେ । ସେମାନେ ଓଡ଼ିଆ ଭାଷାକୁ ସଂସ୍କୃତଭାଷାର ଅନୁରୂପ କରିବାକୁ ଚେଷ୍ଟାକରି ତାର ସରଳ ସହଜ ପ୍ରକୃତିକୁ ନଷ୍ଟ କରିଦେଲେ ଓ ଶୁଦ୍ଧ କରିବାକୁ ଯାଇ ତାହା ବିକୃତ କରିଦେଲେ ।" (ଲାବଣ୍ୟବତୀ ମୁଖବନ୍ଧ—ପୃ. ୯୮-୯୯) ଏହାର ଅନେକ ଉଦାହରଣ ଦିଆଯାଇପାରେ । ଯେପରି—

(କ) ଓଡ଼ିଶାରେ ହଳନ୍ତ ଶବ୍ଦର ପ୍ରୟୋଗ ନ ଥିଲା—ଯେପରି ଗୁମାନ ଚମକ, ଠିକ, ଅସୁମାର, ଯାବତ, ତାବତ ପ୍ରଭୃତି ଶବ୍ଦ । କିନ୍ତୁ ବର୍ତ୍ତମାନ ଏହି ଶବ୍ଦଗୁଡ଼ିକ ହଳନ୍ତ ହୋଇ ଉଚ୍ଚାରିତ ହେଉଛି ।

(ଖ) ସଂସ୍କୃତରେ 'ଅସ୍ତି' ଅର୍ଥରେ ମତୁପ୍‌ର 'ମ' ଓ 'ବ' ବିକଳ୍ପରେ ହୁଏ, ପ୍ରାଚୀନ ଓଡ଼ିଆରେ କେବଳ 'ବ' ହୋଇଥାଏ । ଯେପରି 'ବ୍ୟ ଧିବନ୍ତ', କୀର୍ତ୍ତିବନ୍ତ, ଯଶୋବନ୍ତ, ଧନବନ୍ତ, ଇତ୍ୟାଦି ।

(ଗ) ଲବଣୀବତୀ ଓ ବିଦଗ୍ଧ ଚନ୍ଦ୍ରମଣି ପ୍ରଭୃତି କାବ୍ୟରେ ବ୍ୟବହୃତ ଦଶି, ଶୋହି, ବସୁରି, ନୋହି, କହି, ଥରି, ବର୍ଷି ପ୍ରଭୃତି ଶବ୍ଦଗୁଡ଼ିକୁ ସମାପିକା ଅର୍ଥରେ ଅସମାପିକାର ପ୍ରୟୋଗ ବୋଲି କହି ସେମାନଙ୍କର ଭୁଲ ଦର୍ଶାଇଥାନ୍ତି; କିନ୍ତୁ ପ୍ରକୃତରେ ଏଗୁଡ଼ିକ ସମାପିକା ଓ ବସୁରଇ, ନୋହଇ, କହଇ ପ୍ରଭୃତି ଶବ୍ଦର ସଙ୍କୁଚିତ ରୂପ ।

(ଘ) ପ୍ରକାଶ ହୋଇଲା, ତୋଷ ହୋଇଲା, ପ୍ରବେଶ ହେଲେ ବା ପ୍ରବେଶ ହୋଇଲା, ଆନନ୍ଦ ହେଲେ ପ୍ରଭୃତି ପଦ ଦୋଷଦୁଷ୍ଟ ପଦ ଓ ତାହା ବଦଳରେ ପ୍ରକାଶିତ ହେଲା, ତୁଷ୍ଟ ହେଲେ, ପ୍ରବିଷ୍ଟହେଲେ, ଆନନ୍ଦିତ ହେଲେ ପ୍ରଭୃତି ପଦକୁ ଠିକ୍ ବୋଲି କହନ୍ତି; କିନ୍ତୁ ଓଡ଼ିଆଭାଷାର ସ୍ୱରୂପ ଏବଂ ବୈଶିଷ୍ଟ୍ୟ ଦିଗରୁ ଏ ପ୍ରକାର ପଦ ଆବହମାନ କାଳରୁ ପ୍ରଚଳିତ ହୋଇ ଆସୁଅଛି ।

(ଙ) ବିରସ ତେଜି, ବିଦଗ୍ଧ ନ ଗ୍ରହିଲା କାତର, ଶିରୀଷରୁ କୋମଳ ନେଇ ପ୍ରଭୃତି ପଦକୁ କହନ୍ତି ଯେ ବିଶେଷ୍ୟ ସ୍ଥାନରେ ବିଶେଷଣରେ ପ୍ରୟୋଗ ଦୋଷଯୁକ୍ତ ହୋଇଛି; କିନ୍ତୁ ଏ ପ୍ରକାର ପ୍ରୟୋଗ ପ୍ରାକୃତଭାଷାରେ ବହୁଳ ଭାବରେ ଦେଖାଯାଇଥାଏ । ଓଡ଼ିଆ ଏକ ପ୍ରାକୃତଭାଷା ହେତୁ ଏ ପ୍ରକାର ପ୍ରୟୋଗ ସର୍ବଥା ଯୁକ୍ତିଯୁକ୍ତ ଅଟେ ।

(ଚ) ସନମତ, ମନାନ୍ତର, ଜଗବନ୍ଧୁ, ଜଗମୋହନ, ମହାପ୍ରତାପୀ, ମହାବିବେକୀ, ଅହ୍ନନଶି, ମନୋବାଞ୍ଛା, ତ୍ରିଧାତ୍ରୀ, ନିଧନୀ ପ୍ରଭୃତି ପଦଗୁଡ଼ିକୁ ଆଧୁନିକ ସଂସ୍କୃତଜ୍ଞ ପଣ୍ଡିତମାନେ ଭୁଲ ବୋଲି କହନ୍ତି; କିନ୍ତୁ ଏଗୁଡ଼ିକ ଓଡ଼ିଆଭାଷାର ସ୍ୱଭାବସିଦ୍ଧ ଚିରପ୍ରଚଳିତ ଶବ୍ଦ । ଏ ପ୍ରକାର ବିଚାର କଲେ ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟର ଶବ୍ଦଭଣ୍ଡାର ଭୁଲ ପାଲଟିଯିବ ।

ସେଥିପାଇଁ ଲବଣୀବତୀର ଜଣେ ସମ୍ପାଦକ କହିଛନ୍ତି, "ଆମ୍ଭମାନଙ୍କ ମତରେ ଏସବୁ ନିଗଡ଼ରୁ ଭାଷାକୁ ମୁକ୍ତ କରିବା ଉଚିତ; କିନ୍ତୁ ଦୁଃଖର କଥା, ନୂତନ ପନ୍ଥାର ଲେଖକମାନଙ୍କ ହସ୍ତରେ ଭାଷା ପୁନର୍ବାର ପଶ୍ଚାତ୍ ଗତି କରି ସଂସ୍କୃତ-ମାତାର ସ୍ତନ୍ୟପାନ କରିବାକୁ ଲାଗିଲା । ଅଭିମନ୍ୟୁ ଉପେନ୍ଦ୍ରଙ୍କ ଏ ପ୍ରକାର ଭାଷାର ପ୍ରୟୋଗରେ ଚାଲିଯାଇଛନ୍ତି; କିନ୍ତୁ ଅଭିମନ୍ୟୁ ବିଶେଷରେ ଲିଙ୍ଗ ପ୍ରୟୋଗରେ ନିଜର ସ୍ୱାଧୀନତା ଦେଖାଇଛନ୍ତି ।"

ମୋଟ ଉପରେ ଦେଖିବାକୁ ଗଲେ ଓଡ଼ିଆଭାଷାର ପ୍ରକୃତ ବୈଶିଷ୍ଟ୍ୟ ଅଭିମନ୍ୟୁଙ୍କ ରଚନାର ବିଭିନ୍ନ ସ୍ଥଳରେ ପ୍ରତିଫଳିତ ହୋଇଛି । ଉପେନ୍ଦ୍ର ଓ ଦୀନକୃଷ୍ଣଙ୍କ ଅପେକ୍ଷା ସ୍ଥଳବିଶେଷରେ ଅଭିମନ୍ୟୁଙ୍କର ରଚନା ସରଳତର ଓ ଓ ହୃଦୟଗ୍ରାହୀ ଅଟେ । ପୂର୍ବ କବିମାନଙ୍କର ରକ୍ଷଣଶୀଳତା ପରିହାର କରି ଅଭିମନ୍ୟୁ

କାବ୍ୟରେ ବହୁ ଯାବନିକ ଶବ୍ଦର ପ୍ରୟୋଗ କରିଅଛନ୍ତି ଓ ଯୁଗ ପ୍ରଭାବର ପ୍ରତିକୂଳ ଆଚରଣ କରିନାହାନ୍ତି । ବିଦଗ୍ଧ ଚିନ୍ତାମଣିରେ ବ୍ୟବହୃତ କେତେକ ଆରବୀ, ଫାର୍ସୀ ଶବ୍ଦର ଉଦାହରଣ ଦୃଷ୍ଟାନ୍ତ ସ୍ୱରୂପ ଦିଆଗଲା । ଯେପରି—

ବାରୁଦ, କାଗଜ, ଗୁମାନ, ତରକ, ଗୁହାରି, ବନାଇଲା, ଜମ୍ବୁରନଳୀ, ଜଙ୍ଗି, ଗୃହକାରୀ, ଝଗଡ଼ା, କଡ଼କା, ଫଡ଼କା, ପଟୁଆର, ଭଗାରି, ବତାସ, ଦରବାର, ବିଦାଉ, ଝମକ, ଚମକ, ଚକମକ, ନଳକଳ (ବନ୍ଧୁକ), ତରୁଆର ଓ ଅସୁଆର ଇତ୍ୟାଦି ।

ଭାଷା ପ୍ରୟୋଗରେ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣି ଏକ ମିଶ୍ରିତ ଶୈଳୀ—ଦିବ୍ୟ-ଅଦିବ୍ୟଭାଷାର ସମାହାର । ଏକ ଦିଗରେ ଭଞ୍ଜୀୟ ରଚନାର ଆଦର୍ଶରେ ଆଲଂକାରିକ ସାଧୁ ଶବ୍ଦାବଳୀ ବିଶିଷ୍ଟ ପଦବିନ୍ୟାସ, ଅନ୍ୟ ଦିଗରେ ସରଳ ତରଳ ଲୌକିକ ଓଡ଼ିଆ ଶବ୍ଦ ସମନ୍ୱିତ ମଧୁର ପଦାବଳୀ ଅଭିମନ୍ୟୁଙ୍କ ରଚନାରେ ବୈଚିତ୍ର୍ୟ ଏବଂ ବୈଶିଷ୍ଟ୍ୟ ସୃଷ୍ଟି କରିଛି ।

## ବିଦଗ୍ଧ ଚିନ୍ତାମଣି କାବ୍ୟରେ ଅଭିମନ୍ୟୁଙ୍କ କବିତ୍ୱ—

ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ ଅଭିମନ୍ୟୁଙ୍କ କବିତ୍ୱ ସମ୍ବନ୍ଧରେ ସ୍ୱମତ ଦେଇଅଛନ୍ତି ଏବଂ ଏହି ପଦଗୁଡ଼ିକ ତାଙ୍କର କବିତ୍ୱ ଆଲୋଚନା ପ୍ରସଙ୍ଗରେ ଅପରିହାର୍ଯ୍ୟ ବୋଲି ମନେ ହୋଇଥାଏ । ଅଭିମନ୍ୟୁଙ୍କର ଉକ୍ତିଗୁଡ଼ିକ ହେଉଛି—

"ବିବେକୀ ଗ୍ରାହକ କୋଟି କବି ଆୟୁଘନ
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ" । ୩୯ ।
"ଭାବେ ବୈଶ୍ୟ ପରାୟେ ମୁଁ ମେଲିଛି ପସରା
ଭାବ ସବୁ ଦ୍ରବ୍ୟକୁ ଗ୍ରାହକ ଲୋଡ଼ା ପରା । ୪୦ ।
"ମହୁରି କବିତ୍ୱ ଦୋଷ ପସରାରେ ଥାଇ
ମକ୍ଷିବେ ନାହିଁ କି ଖଲେ ତାହା ନତ ଧାଇଁ" । ୪୧ ।

× × × ×

"କାମନା କଳପତରୁ ଚିନ୍ତାମଣି ନାମ
କଲିଛି କବିତ୍ୱେ ବର୍ତ୍ତିବାକୁ ତବ ପ୍ରେମ ।" । ୧୭ ।
"ଗୁଣ ଗ୍ରାହକେ ପାଇବେ ଚିତ୍ତର ସୁପ୍ରେମ
ଗୀତ ହେବ ବିଦଗ୍ଧ ଚିନ୍ତାମଣି ନାମ" । ୧୯ ।

ଅଭିମନ୍ୟୁ ଅନେକ ଛାନ୍ଦରେ ନିଜର କବିତ୍ୱ କଳ୍ପନା ସମ୍ବନ୍ଧୀୟ ସୂଚନା ମଧ୍ୟ ପ୍ରଦାନ କରିଅଛନ୍ତି । ଯେପରି—

"ଅନୁରାଗ ନୂତନ ଘେଜନା
ଅଭିମନ୍ୟୁ କବି କରେ କଳନା ।" (୫।୪୧)
"ବିଦଗ୍ଧ ଚିନ୍ତାମଣି ଏ ଛାନ୍ଦ ସ୍ୱର୍ଗ
ଏଥି ବିହରର ଧୀର ଅମର ବର୍ଗ ।" (୪୧।୯)
"ଜନ ମଧ୍ୟେ ସ୍ଥାନ ଦାନ ଅଭିମନ୍ୟୁ ଜଗତେ ବୋଲାଏ କବି ।" (୫।୨୧)
"ଅଭିମନ୍ୟୁ କବି । ବାଞ୍ଛା ପୂରାଅ ବ୍ରଜଦେବଦେବୀ ।" (୭୦।୫୧)
"ରସିକ ଗ୍ରାହକ ବିନା ଜଗତେ । କବି ଶ୍ରମ କେ ଜାଣିବ ଯୁଗତେ ।
କୋଟି କବି ଆୟୁଦେଦନ ପ୍ରଶସ୍ତେ । ଗୋଟିଏ ଗ୍ରାହକ ଥିବ କି ସୁସ୍ପଷ୍ଟେ ।
କବିତ୍ୱ ରତ୍ନ ବାଣିଜ୍ୟମାନ । କଦାଚିତେ ହେବ ନାହିଁ ଅମାନ୍ୟ ।"
(୮।୪୫)

ଏହି ସମସ୍ତ ପଦ ଆଲୋଚନା କଲେ ଜଣାଯାଏ ଯେ କବି ସ୍ୱକବିତ୍ୱ ସମ୍ବନ୍ଧରେ ଆଦୌ ଅଭିମାନ ପୋଷଣ କରିନାହାନ୍ତି । ନିଜର ବୈଷ୍ଣବୀୟ ନମ୍ରତା ସେ ସର୍ବତ୍ର ପ୍ରକାଶ କରିଅଛନ୍ତି ଓ ରସଜ୍ଞ ବିବେକୀ ପଣ୍ଡିତମାନଙ୍କୁ ତାଙ୍କ କାବ୍ୟର ମର୍ମ ତଥା କବିତ୍ୱର ଅବଗାହୀ ହେବା ନିମିତ୍ତ ନିବେଦନ କରିଅଛନ୍ତି ।

ବିଦଗ୍ଧ ଚିନ୍ତାମଣିର କବିତ୍ୱ ଅନବଦ୍ୟ । ଅଭିମନ୍ୟୁ ଉପେନ୍ଦ୍ରଙ୍କ କାବ୍ୟଧାରାର ଅନୁସାରୀ ହେଲେ ହେଁ ସେ କାବ୍ୟର ସ୍ଥଳେ ଯେଉଁ ଅପୂର୍ବ କବିତ୍ୱର ପ୍ରମାଣ ଦେଇଅଛନ୍ତି, ସେଥିରେ ହିଁ ତାଙ୍କ କବିପ୍ରତିଭାର ଜ୍ୱଳନ୍ତ ସାକ୍ଷର ବିଦ୍ୟମାନ । ରାଧାକୃଷ୍ଣ ଲୀଳାତ୍ମକ କାବ୍ୟର ସଂଖ୍ୟା ଓଡ଼ିଆ ସାହିତ୍ୟରେ ଅନେକ । ତଥାପି ବିଦଗ୍ଧ ଚିନ୍ତାମଣି ପାଠ କରିବା ପାଇଁ ବାରମ୍ବାର ମନରେ ଅଭିଳାଷ ଆସେ କାହିଁକି ? ଏହାର କାରଣ ହେଉଛି କାବ୍ୟର ଅପୂର୍ବ କବିତ୍ୱ ।

ସଂସ୍କୃତ ଆଲଙ୍କାରିକମାନେ କହିଅଛନ୍ତି ଯେ, ଯାହାଙ୍କର କୃତି ପାଠକଲେ ପ୍ରାଣରେ ପରମ ଆହ୍ଲାଦ ବା ଚମତ୍କାର ଭାବ ଜାତ ହୁଏ, ସେ କବି ନାମରେ ଆଖ୍ୟାତ ଏବଂ ପ୍ରତିଭା ହେଉଛି ଐଶ୍ୱରିକ ଶକ୍ତିବିଶେଷ; ଯାହା ବଳରେ ଦର୍ଶନମାନେ ପଦାର୍ଥ ବିଶେଷରେ ଜ୍ଞାନ ଜନ୍ମେ, ତାହା ବୁଦ୍ଧି ଏବଂ ଯାହା ଫଳରେ ତ୍ରିକାଳଦର୍ଶୀ ହୁଏ, ତାହା ଜ୍ଞାନ । ଯେଉଁ ପ୍ରଜ୍ଞା ସାହାଯ୍ୟରେ ଅଜ୍ଞାତ ବିଷୟ ନୂତନ ଭାବେ ପ୍ରଭାବିତ ହୁଏ, ତାହା ପ୍ରତିଭା ନାମରେ ଆଖ୍ୟାତ । ସେଥିପାଇଁ କୁହାଯାଇଛି—

"ବୁଦ୍ଧିସ୍ତତ୍କାଳିକୀ ଜ୍ଞେୟା ପ୍ରଜ୍ଞା ତ୍ରୈକାଲ ଗୋଚରା
ନବନବୋନ୍ମେଷଶାଳିନୀଂ ପ୍ରଜ୍ଞାଂ ପ୍ରତିଭାଂ ବିଦୁଃ ।"

ବିଦଗ୍ଧ ଚିନ୍ତାମଣିର ବିଭିନ୍ନ ଛାନ୍ଦରେ କବିଙ୍କର ନିସର୍ଗ କବିତ୍ୱ ବିଳସିତ । ବିଦଗ୍ଧ ଚିନ୍ତାମଣିର ତିଂଶ ଛାନ୍ଦରେ କବି ସନ୍ଧ୍ୟାରେ ଯେଉଁ ସୁନ୍ଦର ବର୍ଣ୍ଣନା ଦେଇଅଛନ୍ତି, ଏ ପ୍ରକାର କବିତ୍ୱସମ୍ପନ୍ନ କବିକଳ୍ପନା କ୍ୱଚିତ ଓଡ଼ିଆ କାବ୍ୟରେ

ଦେଖାଯାଇଥାଏ । ଏଣେ ଦିନ ଚାଲିଯାଉଛି ଓ ତେଣେ ଜ୍ୟୋସ୍ନାବିଧୌତ ରଜନୀର ସମାଗମ ଘଟୁଛି । ଆକାଶର ଏକ ଦିଗରେ ଅସ୍ତୋନ୍ମୁଖ ସୂର୍ଯ୍ୟ ଓ ଦିଗ୍‌ବଳୟର ଅନ୍ୟପଟେ ପୂର୍ବାକାଶରେ ପୂର୍ଣ୍ଣିମାର ଚନ୍ଦ୍ର ଉଠିଆସୁଛି—ଗୋଟିଏ ପାଖରେ ଅମୃତ ଓ ଅନ୍ୟ ଦିଗରେ ସ୍ନେହ ବା ପ୍ରେମ, କେହି କାହାଠୁଁ ପ୍ରକୃତିର ନିସର୍ଗ ସୌନ୍ଦର୍ଯ୍ୟର ଊଣା ନୁହଁନ୍ତି—ଏ ପ୍ରକାର ସୃଷ୍ଟିର ଅଭିନବ ବୈଚିତ୍ର୍ୟରେ ଭକ୍ତକବି ବିମୁଗ୍ଧ—ସଙ୍ଗୀତର ସୁମଧୁର ଲହରୀରେ କବିକଣ୍ଠ ଗାଇଉଠିଛି—

"ଏ ଉତ୍ତାରୁ ସୁବଦୃଷ୍ଟି ସାବଧାନେ ଘେନ ରସ
ନିଶି ମୁଖ ଆଗମନ ଦିବସ ଶେଷ
ବାରୁଣୀ ବିଳାସୀ ରବି ପୂର୍ବ ଉଦେ ଶଶୀ ଛବି
ରକ୍ତିମା ଶୁକ୍ଳିମା ମନୋହର ବିକାଶ
ସହଜରେ ଶରଦକାଳ ।
ଚିତ୍ରମୁଖ ଜାତ ତଥି ନିଶି ମଞ୍ଜୁଳ । (୩୦-୧)
ବିଚାର କି ପଦ୍ମଯୋନି ସୁଧା ଅନୁରାଗ ଘେନି
ବିଶ୍ୱ ତୁଳନାରେ ତୁଳି କଳନା କରେ
ଉଚ୍ଛ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା
ଉଚ୍ଚ ନୀଚ ନୀଚ ଉଚ୍ଚ ଜଣା ବିଧିରେ ।
ସୁଧା ଅନୁରାଗ ସଙ୍ଗତ
ହରି କରି ପାରିବ କେ କହ କେମନ୍ତେ" । ୨ ।

କିଛି ସମୟ ପରେ ଜ୍ୟୋସ୍ନାର ଅପୂର୍ବ ପ୍ଲାବନ ଘଟିଲା । ଆକାଶ ପୃଥିବୀ, ସାଗର ସବୁଆଡ଼େ ଚନ୍ଦ୍ରିକାର ତେଜ ଏବଂ କବି ଏହି ଶରତକାଳୀନ ଜ୍ୟୋସ୍ନା-ବିଧୌତ ରଜନୀର ଗୌରବମୟ ସମ୍ଭାରକୁ ସୁନ୍ଦର ବିଭ୍ରମ ଅଳଙ୍କାରରେ ମଣ୍ଡିତ କରି ବର୍ଣ୍ଣନା କରିଅଛନ୍ତି—

"ଶିବାଙ୍କ ଝୋଳିଲେ ଭୀମ ଅଚିନ୍ତ ନାହାନ୍ତ ଭୀମ
ଭୀମ ଗଙ୍ଗାକୁ ନେଉଳେ ଜଟା ଫିଟାଇ
କୁସୁମବତୀ ବ୍ରତତୀ ଅଦୃଷ୍ଟ ରଜାର ସ୍ଥିତ
ମୋଦିହାଦବତୀ ମତି ଚନ୍ଦ୍ରାକୁ ପାଇ ।
ଭ୍ରମରେ ଭ୍ରମରେ ଭ୍ରମନ୍ତ
ମଧୁପ ପଦ୍ମିନ୍ୟେ କୁମୁଦିନୀ ନେଉଳନ୍ତ ।"

ଏହି ଛାନ୍ଦର ପ୍ରତ୍ୟେକ ପଦ ସୁମଧୁର କବି କଳ୍ପନାରେ ଭରପୂର ହୋଇ-ଉଠିଛି । ଛାନ୍ଦଟି ସ୍ୱପ୍ନଦର୍ଶନ ଛାନ୍ଦ ଭାବରେ ପ୍ରସିଦ୍ଧ । କୃଷ୍ଣବର୍ଣ୍ଣ ଶଯ୍ୟାରେ ଗୌରାଙ୍ଗୀ ରାଧାଙ୍କର ମୃଦୁ ମନୋହର ଅବସ୍ଥିତିର ଶୟନଭଙ୍ଗୀ ଉପରି କବି ସୁନ୍ଦର ଉତ୍ପ୍ରେକ୍ଷା

ଅଲଙ୍କାର ଦେଇ ବର୍ଣ୍ଣନା କରିଅଛନ୍ତି, ତାହା ଲକ୍ଷ୍ୟ କରିବାର କଥା । ଏହା ଲକ୍ଷଣାବତୀ ସ୍ୱପ୍ନଦର୍ଶନ ଛାନ୍ଦରେ ଲାବଣ୍ୟବତୀର ଅନୁରୂପ ବର୍ଣ୍ଣନା ହେଲେ ମଧ୍ୟ କବିଙ୍କର ସ୍ୱତନ୍ତ୍ର କଳ୍ପନା ରହିଛି । ଯେପରି—

"ବିଶ୍ୱଚକ୍ର ବିଶ ପାଇଁ ପ୍ରୀତ ମୂର୍ତ୍ତିମନ୍ତ ହୋଇ
ଅଣିମାଦ ଦେବ ଅଣିଆଇ ଶୋଇଛି ।
ପାଣି ଦେବା ଗଣ୍ଡସ୍ଥଳେ ଶଶି କୋକନଦ କୋଳେ
ପଦ୍ମଭଡ଼ବାର ଶୋଭାକୁ ହସିଦେଉଛି
କୃଷ୍ଣବର୍ଣ୍ଣ ଶେଯେ ଶୟନ
ସଜଳ ଘନେ ସ୍ଥକିତ ବିଦ୍ୟୁ ସମାନ ।"

ଏଠାରେ କୃଷ୍ଣବର୍ଣ୍ଣ ଶେଯରେ ରାଧାଙ୍କର ଶୟନ ପ୍ରକାରାନ୍ତରରେ ରାଧାଙ୍କର ଐକାନ୍ତିକୀ କୃଷ୍ଣପ୍ରେମର ପ୍ରକୃତ ସୂଚନା ପ୍ରଦାନ କରିଥାଏ ।

ଅନ୍ୟ ଦିଗରେ ରସରାଜ ଶ୍ରୀକୃଷ୍ଣଙ୍କର ମଧୁର ରୂପ ବର୍ଣ୍ଣନାରେ କବି ଯେଉଁ କବିତ୍ୱ ପ୍ରକାଶ କରିଅଛନ୍ତି, ଏ ପ୍ରକାର ବର୍ଣ୍ଣନା ଓଡ଼ିଆ ସାହିତ୍ୟରେ ନାହିଁ କହିଲେ ଚଳେ । ଗୌଡ଼ୀୟ ବୈଷ୍ଣବ କବିଗଣ ମୁଖ୍ୟତଃ 'ଅପ୍ରାକୃତ ପ୍ରେମମୂର୍ତ୍ତି' ରାଧା ଏବଂ କୃଷ୍ଣଙ୍କର ନୈସର୍ଗିକ ରୂପଲାବଣ୍ୟ ବର୍ଣ୍ଣନା କରିବାରେ ତାଙ୍କର ସମସ୍ତ ପ୍ରତିଭାକୁ ନିୟୋଜିତ କରିଅଛନ୍ତି । ଏହାର କେତେକ ଉଦାହରଣ ଏଠାରେ ଦିଆଯାଇପାରେ । ଯେପରି—

"ଚିକ୍‌କଣ କାଲିୟା ରୂପ ମରମେ ଲାଗିୟାଛେ
ଧରନେ ନା ଯାୟ ମୋର ହିୟା
କତ ଚାନ୍ଦ ନିଙାଡ଼ିୟା ମୁଖାନି ମାଜିୟାଛେ
ନା ଜାନି ତାୟ କତ ସୁଧା ଦିୟା" —ଜ୍ଞାନଦାସ

"ଶିରେ ଗୁଞ୍ଜା ଦିୟା ବେଢ଼ା ଟାନିୟା ବାନ୍ଧିଲ ଚୂଡ଼ା
ତାହେ ଦିଲ ଶିଖିପୁଚ୍ଛ ଗୁଁଦେ
କିବା ସେ ଗ୍ରୀବାର ଶୋଭା ମଦନେର ମନୋଲୋଭା
ଗୋରଚନା ତିଲକ ସୁଛାଁଦେ" —କବିଶେଖର

ଅଥବା

"କି କାଳ କାଜର କାଳିନ୍ଦୀର ଜଲ କାଲ ଉତପଲ ଦାମ
ନୀଲ ନବଘନ ନହେ ନିରୁପମ ବରଣେ ଚିକ୍‌କଣ ଶ୍ୟାମ"
—ଗୋବିନ୍ଦ ଆଚାର୍ଯ୍ୟ

କିନ୍ତୁ ଓଡ଼ିଆ କବି ସାମନ୍ତ ସିଂହାରଙ୍କର ଶ୍ରୀକୃଷ୍ଣଙ୍କର ରୂପବର୍ଣ୍ଣନା କି ମଧୁର କି ସୁନ୍ଦର ଓ କି କବିତ୍ୱମଣ୍ଡିତ ହୋଇଛି, ତାହା ଯେ କୌଣସି ପାଠକ ଉଦ୍ଧୃତ ପଦସମୂହରୁ ବୁଝିପାରିବେ—

"କଳା କଣ୍ଠଦଳା ଅଞ୍ଜନ ମର୍କତ ଇନ୍ଦ୍ରନୀଳମଣି ଘନ
ସୁଧା ଅନନ୍ଦ ଆହ୍ଲାଦିତ ମାଦକ ଶୃଙ୍ଗାର ପ୍ରେମ ମିଳନ ଗୋ । ପୁଣି ।
ଶୋଭାସମୁଦ୍ର ମନ୍ଥା ଲବଣୀ ଗୋ । କୋଟି ସୃଷ୍ଟିକାନ୍ତସାର ଶ୍ରେଣୀ ଗୋ ।
ମହା ଲାବଣ୍ୟ ରତନ ଖଣି ଗୋ ।" (ଛା. ୪୭।୨)
"କେତେ କାଳ କଳ୍ପି କଳ୍ପି ବିଧି ସିଙ୍କି ଲକ୍ଷ କଲା ବିଚକ୍ଷଣ ପ୍ରତିମା
ମୋହନ ମନ୍ତ୍ରରେ ଜୀବନ୍ୟାସ କରି ଭୂଷିତ କଲା ଭଙ୍ଗିମା ଗୋ । ଭାବ ।
କଲା ଲଳିତ ମାଧୁର୍ଯ୍ୟାର୍ଣ୍ଣବ ଗୋ । ହେଲା ଭୁବନେଷ୍ୱ ରଖାଠାବ ଗୋ
ମାର ଦେବାର୍ଚ୍ଚନ ଦେବ ହେବ ଗୋ" । ୩ ।
କେତକୀ ପାଖୁଡ଼ା ଗୋଟା ମଲ୍ଲୀ ବେଢ଼ା ଚୂଡ଼ା ବୁଡ଼ାଇଛୁ ଘର :
ଅର୍ଦ୍ଧଚନ୍ଦ୍ରକ ପରେ କେକୀଚନ୍ଦ୍ରକ ସାରି ଦେଉଛୁ ପସାର ଗୋ । ତହିଁ ।
ନବ ଜାମୁଡ଼ାଳ ଖୋସା କେହ୍ନ ଗୋ । ଝଞ୍ଜା ଗୁଞ୍ଜ ଗଞ୍ଜରି ମୁଣ୍ଡନ୍ହ ଗୋ ।
ପୁଷ୍ଟବେଶ ତୋର ଲକ୍ଷ୍ୟ କାହିଁ ଗୋ" । ୪ ।

ଛା. ୫' ରେ କବି 'ଦୂତୀଯୁଗଳ ଅନୁରାଗ କଥନ' ପ୍ରସଙ୍ଗରେ ରାଧାଙ୍କର କୃଷ୍ଣ ପ୍ରତି ଅନୁରାଗ ଦୂତୀଙ୍କ ମୁଖରେ ଯେପରି ବର୍ଣ୍ଣନା କରିଅଛନ୍ତି ସେ ପ୍ରକାର କବିତ୍ୱ ଅନନ୍ୟସାଧାରଣ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏ ପ୍ରକାର ଛାନ୍ଦ ନାହିଁ କହିଲେ ଚଳେ ଓ ସେହି ଛାନ୍ଦଗୁଡ଼ିକୁ 'କ୍ଲାସିକ୍ସ' ବୋଲି ଆଖ୍ୟାତ କରାଯାଇପାରେ । ଓଡ଼ିଶାର ଅନ୍ଧାରିତ ପୁରପଲ୍ଲୀର ନିଭୃତ କୋଣରେ ଏହି ଛାନ୍ଦର ମଧୁର ଝଙ୍କାର ନିତ୍ୟ ପ୍ରତିଧ୍ୱନିତ; କାରଣ ଏହି ଛାନ୍ଦଗୁଡ଼ିକ କବିଙ୍କର ସ୍ୱତଃସ୍ଫୂର୍ତ୍ତି କବିତ୍ୱ, ଏଥିରେ ଚେଷ୍ଟା ବା ଶ୍ରମ ନାହିଁ ।

ନୀଳକମଳ, ଯମୁନାର ନୀଳ ଜଳରାଶି, କଜ୍ଜ୍ୱଳର ଚିହ୍ନ, ତମାଳ ବନର ନୀଳିମା, ନୀଳବର୍ଣ୍ଣୋଦ୍ଭାସିତ ନୀଳମଣି, ପୁଣି କୁଞ୍ଚିତକୃଷ୍ଣକବରୀ—ଏ ସବୁରେ ବିରହିଣୀ ରାଧା, କୃଷ୍ଣଙ୍କର ସ୍ୱରୂପ ଦେଖି ପ୍ରେମୋଚ୍ଛ୍ୱାସରେ ପୁଲକିତ ହୋଇ ଉଠିଛନ୍ତି । ପ୍ରତ୍ୟେକ କୃଷ୍ଣବର୍ଣ୍ଣ ପଦାର୍ଥରେ ତାଙ୍କର ଅନୁରାଗ ପ୍ରତିଫଳିତ ହୋଇଛି । ବର୍ଣ୍ଣନାଗୁଡ଼ିକ କି ନିସର୍ଗ କବିତ୍ୱରେ ପ୍ରତିଷ୍ଠିତ, କି ଅପୂର୍ବ ପରିପାଟୀରେ ପରିଶୋଭିତ, ତାହା ପ୍ରକାଶ କରିହୁଏ ନାହିଁ । ଯେପରି—

"କାଳିଆ କମଳ ଦେଖିଲେ କମଳ ନୟନରେ ହୋଏ ଜରଜର ।
ଦେଖି ନବଘନ ତାର ଅପଘନ ପୁଲକି ହୁଅଇ ଥର ଥର ।
ଘନ ସୁନ୍ଦର ହେ । ଯମୁନା ଯିବାକୁ ଡର ଡର ।
ଏ ଅତି ବିଚକ୍ଷଣ କଜ୍ଜ୍ୱଳରେ ଚିହ୍ନ ଲେଖି ଚୁମ୍ବିଦିଏ ବାରବାର" ।୨।

"ଦେଖି ତମାଲକୁ ବସ୍ତ୍ର କୋଳକୁ ସନ ଦେଇଥାଏ ବାହୁ ଯୁଗ
ଶ୍ୟାମ ସୁବାସରେ ଆଣମାନସରେ କଳାବତୀ ସଙ୍ଗେ ଅନୁରାଗ ।
ରସଶେଖରଂ ହେ । ଭୂଷଣ ନାଗେନ୍ଦ୍ରି ମଣି ହାର
ବସି ଗ୍ରାମାବର ଫିଙ୍ଗାଇ କହର ଦେଖୁଥାଇ ଥୋଇ ହୃଦେ ତାର" ।୩।

ବାତ୍ସଲ୍ୟରସର ବର୍ଣ୍ଣନାରେ ମଧ୍ୟ କବି ସେହିପରି ଗୋଟିଏ ଗୋଟିଏ ଛାନ୍ଦରେ ବାସ୍ତବ ବର୍ଣ୍ଣନାରେ ଅଦ୍ଭୁତ ଚମତ୍କାରିତା ଦେଖାଇ ଅଛନ୍ତି । ଏ ପ୍ରକାର ସରଳ ଲଳିତ ଶବ୍ଦାବଳୀଯୁକ୍ତ କବିତ୍ୱପୂର୍ଣ୍ଣ ବର୍ଣ୍ଣନା ଓଡ଼ିଆ ସାହିତ୍ୟରେ ଦୁର୍ଲ୍ଲଭ । 'କଳାକାଇଁଚ ବାଣୀ'ରେ ଲେଖାଯାଇଥିବା 'ଧୀରେ ଯେନ କାନନରେ କୃଷ୍ଣ ବଲମ୍ବିତ' ଛାନ୍ଦଟି କବିତ୍ୱଛଟାରେ ପରିପୂର୍ଣ୍ଣ । ଜନନୀ ହୃଦୟର ସନ୍ତାନବାତ୍ସଲ୍ୟ ଅପରୂପ ବୈଭବରେ ବିଭବାନ୍ୱିତ ହୋଇ ଉଠିଛି ଏହି ଛାନ୍ଦରେ । ପ୍ରତ୍ୟେକ ଓଡ଼ିଆର କଣ୍ଠରେ ଏହି ଛାନ୍ଦଟି ଗଳାର ମାଳା । ପ୍ରତ୍ୟେକ ଓଡ଼ିଆ ମା' ଏହି ଛାନ୍ଦରୁ ପଦେ ଅଧେ ଶୁଣି ଆଖିରୁ ଲୁହ ଗଡ଼ାଇଥାଏ ବାତ୍ସଲ୍ୟରସରେ ଉଦ୍‌ବୁଦ୍ଧ ହୋଇ । ଯେପରି—

"ନିଧନ କଙ୍କାଳ ମୋର ଦରିଦ୍ର ପସରା
ଅନ୍ଧର ଲଉଡ଼ି ବାବୁ ହୃଦରହି ହାର । କଳାମାଣିକ ରେ" ।୨।
"ଡରୁଥାଉ ଅନ୍ଧାରକୁ ରଖିଯାଉ ଗୋରୁ
ଜନକ ଜନନୀ ସୁଖ କାହିଁପାଇଁ ସାରୁ । କଳାମାଣିକ ରେ" ।୪।
"ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ
ହୃଦତାପ ବିନାଶନେ ତୁ ହରିଚନ୍ଦନ । କଳାମାଣିକ ରେ" ।୫।

କୃଷ୍ଣ ଏକୁଟିଆ ବଣକୁ ଯାଇଛନ୍ତି ଏବଂ ଏଥିପାଇଁ ମା'ର ହୃଦୟରେ କି ବ୍ୟାକୁଳତା ! କି ବ୍ୟଗ୍ରତା ! ମାଆର ମନସ୍ତତ୍ତ୍ୱ କିପରି ଏଠାରେ ରୂପାୟିତ ହୋଇଛି, ତାହା ଯେ କୌଣସି ପାଠକ ଉପଲବ୍ଧି କରିପାରିବେ, ସନ୍ଦେହ ନାହିଁ । ଯେପରି—

"ଦିବକର ଚାହିଁ ଅଛୁ ଛତ ମୃଗୀ ପରି
ଦିନ ସରୁନାହିଁ ଲବ ଯୁଗ ହେଲା ସରି" । ୨୯ ।
"କେ ଯାଇଁ କହନ୍ତା ତୋତେ ମୋହର ବେଦନା
ଅବଶ୍ୟ ହୁଅନ୍ତୁ ତୁହି ମାତା ସ୍ନେହ ଘେନା" । ୩୦ ।
"ଦଉଡ଼ି ସିନ୍ଧି କି ବନେ ହେଉଛୁ ଆତୁର
ପୟୋଧରୁ କ୍ଷୀର ସ୍ରବି ପଡ଼େ ଧାର ଧାର" । ୩୧ ।
"ମନ ଛନଛନ ବନ ନେଇଁ ନ ହେଲା
ତୋ ଅଞ୍ଚଳ ପରି ଛୁଇ ମୋତେ ପ୍ରତେ ହେଲା" । ୩୨ ।

୨୪ ଛାନ୍ଦରେ 'ଗୋଗ୍ରହଣ ବଧ' ବର୍ଣ୍ଣନାରେ ମଧ୍ୟ କବି ନିପୁଣତା ସହକାରେ ଯେଉଁ ବୀରରସର ବର୍ଣ୍ଣନା କରିଛନ୍ତି; ସେଥିରେ ଅପୂର୍ବ କବିତ୍ୱ ବିଳସିତ ହୋଇଛି ଓ ତାହା ପ୍ରାୟ 'କଳାମାଣିକ' ଛାନ୍ଦରେ ଅନୁରୂପ ଅଟେ ।

ଏହା ବ୍ୟତୀତ କାବ୍ୟର ବିଭିନ୍ନ ସ୍ଥଳରେ କବିଙ୍କର କବିପ୍ରତିଭା ପ୍ରକାଶ ପାଇଛି ଓ ଭଙ୍ଗୀୟ ରଚନା ପରିପାଟୀରେ ପରି ଶୋଭିତ ହୋଇଛି—କବିଙ୍କର ଭାଷାରେ ତାଙ୍କର କବିତ୍ୱ ହେଉଛି—

"ଚନ୍ଦ୍ରରୁ ଶୀତଳ ସ୍ୱାଦୁ, ସୂର୍ଯ୍ୟରୁ ବିମଳ
ଚରିତ ଗଙ୍ଗା ନିର୍ମଳ ସିନ୍ଧୁରୁ ଅଚଳ ।" (୧।୨୨)

ଅଭିମନ୍ୟୁଙ୍କର କବିତ୍ୱ ସ୍ୱତଃସ୍ଫୂର୍ତ୍ତି, ତାଙ୍କ ନିଜ ଭାଷାରେ—

"ବିବେକୀ ଗ୍ରାହକ କୋଟି କବି ଆୟୁ ଯେନ
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ" (୧।୩୯)

କବି ମଧ୍ୟ କହିଛନ୍ତି, ତାଙ୍କର କବିତ୍ୱର କେଉଁଠି ବା କେମିତି ଦୋଷ ଥାଇପାରେ, କିନ୍ତୁ ଖଳ ସମାଲୋଚକମାନେ ସେ ଦୋଷକୁ ପ୍ରଧାନ କରି ଧରିବସିବା ଉଚିତ ନୁହେଁ ଏବଂ ସେଥିପାଇଁ କାବ୍ୟର ନିନ୍ଦା କରିବା ମଧ୍ୟ ସେମାନଙ୍କର ଉଚିତ ନୁହେଁ । ବିବେକୀ ଗ୍ରାହକମାନେ ସେହି କୁ-ସମାଲୋଚକମାନଙ୍କୁ ଚିହ୍ନି ରଖିବା ଦରକାର । ସେମାନଙ୍କର ବୁଦ୍ଧି ଶୁଆପୁଚ୍ଛ ପରି ଏବଂ ଶତଚେଷ୍ଟାରେ ତାକୁ ସିଧାସଳଖ କରିବା ସମ୍ଭବ ନୁହେଁ ।

"ମହତର କବିତ୍ୱ ଦୋଷ ପସରରେ ଥାଇ
ମର୍ଦ୍ଦିବେ ନାହିଁ କି ଖଳେ ତାହା ନିତି ଧାଇଁ" (୧।୪୧)
"ଯଥାଜାତ ବୁଦ୍ଧି ଶୁଆ ପୁଚ୍ଛ ପ୍ରାୟେ ଯେନ
ଯଥୋଚିତ ନୋହେ ତାଙ୍କ ନିନ୍ଦନ ବନ୍ଦନ ।" (୧।୪୨)

କବିତ୍ୱ ଉପଲବ୍ଧି ନିମିତ୍ତ 'ବିବେକୀ ଗ୍ରାହକ' 'ରସଜ୍ଞ ବ୍ୟକ୍ତି'ର ଆବଶ୍ୟକତା କାଲେ କାଲେ ରହିଛି । ସେଥିକୁ ଲକ୍ଷ୍ୟକରି ଦୀନକୃଷ୍ଣ ଦାସ ମଧ୍ୟ ଯଥାର୍ଥ ଭାବରେ କହିଛନ୍ତି—

"କବି ହୋଇ କରୁଥିବ ନିର୍ମଳ କବିତ୍ୱ
କର୍ଣ୍ଣ ଦେଇ ଶୁଣୁଥିବେ ରସିକ ପଣ୍ଡିତ ।"

ଯଥାର୍ଥରେ ଏ ଉକ୍ତିର ସତ୍ୟତା କାଲେ କାଲେ ରହିଛି—ଅଭିମନ୍ୟୁଙ୍କର କବି ପ୍ରତିଭା ଅସାମାନ୍ୟ ଓ ଯୁଗେ ଯୁଗେ ତାଙ୍କର କବିତ୍ୱ ଓଡ଼ିଆ ସାହିତ୍ୟରେ ସ୍ୱୀକୃତିଲାଭ କରିଛି । ଭଞ୍ଜ ବା ଦୀନକୃଷ୍ଣଙ୍କଠାରୁ ତାଙ୍କର କବିତ୍ୱ କୌଣସି ଗୁଣରେ ଊଣା ନୁହେଁ—ବରଂ ଅନେକ ସ୍ଥଳରେ ଅଭିମନ୍ୟୁ ସ୍ୱ-ବୈଶିଷ୍ଟ୍ୟ ନେଇ କବିତ୍ୱରେ ସ୍ୱତନ୍ତ୍ରତା ସୃଷ୍ଟି କରି ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ।

# ବିଦଗ୍ଧ ଚିନ୍ତାମଣି କାବ୍ୟରେ ସମାଜ ଚିତ୍ର—

ଅଭିମନ୍ୟୁ ସାମନ୍ତସିଂହାରଙ୍କ ଆବିର୍ଭାବର ସମୟ ଖ୍ରୀ. ୧୭୫୭—୧୮୦୬ । କବି ଉଭୟ ମରହଟ୍ଟା ରାଜତ୍ୱ ଓ ଇଂରେଜ ରାଜତ୍ୱ କାଳରେ ଜୀବିତ ଥିଲେ । ଓଡ଼ିଶା ଇତିହାସରେ ମରହଟ୍ଟାମାନେ ଖ୍ରୀ. ୧୭୫୧—୧୮୦୩ ପର୍ଯ୍ୟନ୍ତ ଓଡ଼ିଶାକୁ ସ୍ୱ-ଶାସନାଧୀନରେ ରଖିଥିଲେ । ସେ ସମୟର ଓଡ଼ିଶାର ସାମାଜିକ ଇତିହାସରୁ ଜଣାଯାଏ ଯେ, ମରହଟ୍ଟା ଶାସନରେ ଓଡ଼ିଶାର ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ଖ୍ରୀ. ୧୭୮୦ ପୁଣି ୧୭୯୨-୯୩ରେ ଓଡ଼ିଶାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା ଓ ସେଥିରେ ଲକ୍ଷ ଲକ୍ଷ ଲୋକ ପ୍ରାଣ ହରାଇଥିଲେ । ଏହି ସମୟରେ ସମଗ୍ର ଭାରତର ରାଜନୀତିରେ ମରହଟ୍ଟା ଓ ଇଂରେଜମାନଙ୍କ ମଧ୍ୟରେ ବିବାଦ ଲାଗି-ରହିଥାଏ । ରାଜ୍ୟରେ ସେପରି ବିଧିବଦ୍ଧ ଶାସନ ନ ଥିଲା । କରଦ ରାଜା ଓ ଜମିଦାରମାନେ ମରହଟ୍ଟାମାନଙ୍କୁ ସେମାନଙ୍କର ବାର୍ଷିକ ଦେୟ ଦେଇ ନିର୍ଦ୍ଦ୍ୱନ୍ଦ୍ୱରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ଐତିହାସିକମାନେ କହିଥାନ୍ତି "ମରହଟ୍ଟା ଶାସନ ଓଡ଼ିଶାରେ ଏକ ଅତ୍ୟାଚାରର ପ୍ରତିଶବ୍ଦ ବୋଲି ବ୍ୟବହୃତ ହୋଇଥାଏ ।" ଜନଶ୍ରୁତିରେ ମରହଟ୍ଟା ଅତ୍ୟାଚାରର ଅନେକ କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ—ଅଭିମନ୍ୟୁଙ୍କର ଏହି ପ୍ରକାର ବାତାବରଣ ଭିତରେ ଆବିର୍ଭାବ ଘଟିଥିଲା । ସେ ଯେହେତୁ ଜମିଦାର ବଂଶରେ ଜନ୍ମ ହୋଇଥିଲେ ଓ ମାନସିକ ଚିନ୍ତାଧାରାରେ ଭକ୍ତିଧର୍ମୀ ବୈଷ୍ଣବ ଥିଲେ; ତେଣୁ ତାଙ୍କର ଭାବଧାରାରେ ସେପରି କିଛି ସାମାଜିକ ଚେତନା ପ୍ରତିଫଳିତ ହୋଇ ନାହିଁ । ଓଡ଼ିଆ ରୀତିକାବ୍ୟ ସମୂହର ଯାହା କିଛି ବୈଶିଷ୍ଟ୍ୟ, ତାହା ଅଭିମନ୍ୟୁଙ୍କ କାବ୍ୟରେ ଅବିକଳ ପରିଦୃଷ୍ଟ ହୋଇଥାଏ । ଓଡ଼ିଆ ସମାଜଚେତନା ରୀତିକାବ୍ୟ ସମୂହରେ ପ୍ରତିଫଳିତ ହୋଇ ନ ଥିବାର ଆମ୍ଭମାନଙ୍କର ମନେ ହୋଇଥାଏ ।

ତଥାପି ଅଭିମନ୍ୟୁଙ୍କ କାବ୍ୟରେ ତତ୍କାଳୀନ ଓଡ଼ିଆ ସମାଜର ଚଳଣି ଓ ଇଙ୍ଗିତ ଅନେକ ରହିଛି । ଓଡ଼ିଆର ପ୍ରାଚୀନ ସଂସ୍କୃତିର ଅଳ୍ପାଧିକ ପରିମାଣରେ ଛାପ ବିଦଗ୍ଧ ଚିନ୍ତାମଣିର ବିଭିନ୍ନ ସ୍ଥଳରେ ପଡ଼ିଥିବାର ଜଣାଯାଏ ।

(୧) ଛନ୍ଦ ଓ ସଙ୍ଗୀତ ଶାସ୍ତ୍ରର ଚର୍ଚ୍ଚାରେ ଅଭିମନ୍ୟୁଙ୍କ ପାଣ୍ଡିତ୍ୟ ଥିବାର ବିଷୟ ବିଦଗ୍ଧ ଚିନ୍ତାମଣି କାବ୍ୟ ପାଠରୁ ଜଣାଯାଇଥାଏ । ଯେପରି—

(କ) "ଯେଉଁ ହେଲେ ସଙ୍ଗୀତ ବିଦ୍ୟା । ଏହୁ ଗୀତ ନାମ ତ୍ରିଭଙ୍ଗୀତ
ଜାଣୁମର ।" (୧୨।୪୨)

(ଖ) "ସଙ୍ଗୀ ସଙ୍ଗୀତ ପଣ୍ଡିତା ଜଗତମଣ୍ଡିତା ବାଣୀ
ତ୍ରିଭଙ୍ଗେ ଦୁଃଖରେ ଝରେ ।" (୨୩।୬)

(ଗ) "ଯେନ ସଙ୍ଗୀତ ବିଦ ଏ ଗୀତ ସୁନ୍ଦି ଭଙ୍ଗିତ ହେଲ ।

ଦୀନ ସାମନ୍ତସିଂହାର ଚନ୍ଦ୍ର ଗୋପିକା ମଡେ ଖେଳା ।" (୭୯।୩୮)

(୨) ଏହାଛଡ଼ା ନାଟକ, ନାଟ୍ୟଶାଳା, ଛାୟାନୃତ୍ୟ ଓ 'ଯବନିକା' ପ୍ରଭୃତି ଶବ୍ଦର ସବିଶେଷ ବ୍ୟବହାରରୁ ଜଣାଯାଏ, କବିଙ୍କର **ନାଟ୍ୟ** ସାହିତ୍ୟ ତଥା ରଙ୍ଗମଞ୍ଚ ସମ୍ବନ୍ଧରେ ଉତ୍ତମ ଧାରଣା ଥିଲି । ଏହି ଉପାଦାନଗୁଡ଼ିକ ଓଡ଼ିଆ **ନାଟକ**, ରଙ୍ଗମଞ୍ଚର ଇତିହାସକୁ ଯେ ଏକ ଅମୂଲ୍ୟ ଉପାଦାନ, କହିବା ବାହୁଲ୍ୟ ହେବ । ୭୨ ଛାନ୍ଦରେ କବି ଏ ସବୁର ବର୍ଣ୍ଣନା ଦେଇଛନ୍ତି ନିମ୍ନୋକ୍ତ ଭାବରେ—

"ଶୁଣି କେ ମିତ **ହସିଲ**, କୃଷ୍ଣଙ୍କ ଗୃହେ ବସିଲ
ଏ ସ୍ଥାନେ ପ୍ରସ୍ତୁତ **ନାଟ୍ୟଶାଳା** ।
ଦୀତ **ସୂତ୍ରଧାର** ହେଲ ବିଦୁଷକ କରେ **ଲୀଳା**
ମୂଦ **ଗଣିକା ନର୍ତ୍ତକୀ** ଭଲ ହେ ।
ପ୍ରାଣମିତ । ଦାସ ବିମଣ୍ଡନ ହିଁ ମାଣ୍ଡିଲ ।
କଳକଣ୍ଠ ସ୍ୱର ହେଲ ପଞ୍ଚମସ୍ୱର ଦର୍ଶିଲ **ଅଭିନୟ** କ ପଥ ଚଳାଲ ।"
(ଛା. ୭୨।୯)

"କୁହୁଟୁଆ କରେ ସ୍ୱର **ମୁରଜବାଦ୍ୟ** ପ୍ରଚୁର **ବୀଣାନାଦ**
କି ଝିଲ୍ଲି ଝଙ୍କାର
ମଧୁସ୍ୱନାଦ ଭ୍ରମରକରୁଅଛି ପରସ୍ପର ନାନା ବିକଳିତ **ବାଦ୍ୟବାର** ହେ
ପ୍ରାଣମିତ । ଦାତଚଳ ଭଉଁରୀ ବଗୁର ।
**ବସନ୍ତପକ୍ଷୀର ଗିର ଧ୍ରୁବପଦ ବିଶ୍ରାମର ମାନ ତାନ**
**ଧାରଣ ଆଧା** ।" (ଛା. ୭୨।୧୦)

ପୁଣି—

"ଶୁଣି କହେ କେଉଁ ମିତ ହେଲେ ପ୍ରବୀଣା ସଙ୍ଗୀତ
କେତେ **ବନ୍ଧ ନାଟ** ରଚିବ ତ ।
**ମାନ ହେଲେ ବିଜନତ ଋଗ** ନୋହିବ **ଖଣ୍ଡିତ**
**କରଚଳନାଭିନୟ** ସତ ହେ । ପ୍ରାଣମିତ
ହୁଁ କୁତ ଗାନରେ **ବିସ୍ମାମିତ** ।
**ମୂର୍ଚ୍ଛନା କଳା** ଭୂଳିତ **ଲୟଭେଦ** ବିକଳ୍ପିତ **ମୂଦ** ଇଣି
**ଗାନ୍ଧାର ସ୍ୱରେ ତ** ହେ ।" ୧୨ ।

୯୧ ଛାନ୍ଦରେ କବି 'ଯବନିକା' ଶବ୍ଦର ପ୍ରୟୋଗ କରି କହିଅଛନ୍ତି—

"ପ୍ରେମ **ଯବନିକା ପଟ୍ଟ** କରିଏ ବିଚିତ୍ର **ନାଟ** କହ ଗୋ ଏଥିକି
କେଉଁ ଉପାୟ ଅଛି ।" (ଛା. ୯।୩୧)

(୩) ଛପ୍ପାନୃତ୍ୟ ଯାହା ଓଡ଼ିଶାର ଲୋକନୃତ୍ୟରେ ବିଶେଷ ଭାବରେ ପ୍ରସିଦ୍ଧି ଲାଭ କରିଛି ତାହାର ମଧ୍ୟ କେତେକ ସୂଚନା କବି ପ୍ରଦାନ କରିଅଛନ୍ତି—

"ବାଘ ଆଚ୍ଛାଦାନେ ତନୁ । କର୍ମକମାନେ ସୁତନୁ ।
କନକ ପିତୁଳା-ଛପ୍ପାପଟ୍ଟଖୋଲା କରୁଅଛି କି ଅତନୁ ।" (ଛା.୮।୨୦)

(୪) ଅଭିମନ୍ୟୁଙ୍କର କାବ୍ୟଶାସ୍ତ୍ର ବ୍ୟତୀତ ଅନ୍ୟାନ୍ୟ ଶାସ୍ତ୍ରରେ ମଧ୍ୟ ପାଣ୍ଡିତ୍ୟ ଥିଲା । ଯଥା—କାମଶାସ୍ତ୍ର, ସାମୁଦ୍ରିକ, ବୈଦ୍ୟଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର, ଯନ୍ତ୍ର, ମନ୍ତ୍ର ଓ ତନ୍ତ୍ର, ଗୋଶାସ୍ତ୍ର, ମଲ୍ଲବିଦ୍ୟା ପ୍ରଭୃତି । ଏ ସବୁରେ କବିଙ୍କର କିଛି ନା କିଛି ଅଭିଜ୍ଞତା ଥିବାର ଜଣାଯାଇଥାଏ । ତହିଁର କେତେକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା—

(କ) କାମଶାସ୍ତ୍ର :—

ନାଗର ସାର ଲୀଳା ଲହରୀ । ଗୁଣରତନ ନିଧି ସୁରଗିରି ।
କାମୀ କଳ୍ପତରୁ । **କାମଶାସ୍ତ୍ର** ଦୀକ୍ଷାଦାୟକ ଗୁରୁ ।" (ଛା. ୫୫।୧୩)

(ଖ) ରସଶାସ୍ତ୍ର :—"ରସିକା । **ରସଶାସ୍ତ୍ର** ଅବଗାହିନୀ ।
ରହିବ କପରି ଧଇର୍ଯ୍ୟକୁ ଧରି ରସିକା ବିନା ରସିକମଣି ।"
(ଛା. ୨୯।୧୦)

ଏହା ବ୍ୟତୀତ ବିପ୍ରଲମ୍ଭ ଓ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣନାରେ କବି ବାତ୍ସାୟନଙ୍କ କାମସୂତ୍ରାନୁଯାୟୀ ସବିଶେଷ ବର୍ଣ୍ଣନା ପ୍ରଦାନ କରି ପ୍ରାଚୀନ ଭାରତୀୟ ପରମ୍ପରା ଉପେନ୍ଦ୍ର ତଥା ଅନ୍ୟାନ୍ୟ ରୀତିଯୁଗୀୟ କବିଙ୍କ ତୁଲ୍ୟ ରକ୍ଷା କରିଅଛନ୍ତି ।

(ଗ) ପ୍ରାଚୀନ ଓଡ଼ିଶାର କବିଗଣଙ୍କ ମଧ୍ୟରେ ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ ପ୍ରଭୃତି କବିବୃନ୍ଦଙ୍କର ସାମୁଦ୍ରିକ ଶାସ୍ତ୍ରରେ ଦକ୍ଷତା ଥିଲା । ଦୀନକୃଷ୍ଣ ଦାସ 'ସାମୁଦ୍ରିକ' ଗ୍ରନ୍ଥର ମଧ୍ୟ ପ୍ରଣେତା ଅଟନ୍ତି । ବିଦଗ୍ଧ ଚିନ୍ତାମଣିରେ ଏହି ସାମୁଦ୍ରିକକୁ ଲକ୍ଷ୍ୟ କରାଯାଇ କୁହାଯାଇଛି—

"ଶ୍ୟାମା ମତି ବଢ଼ାଇବ । **ସାମୁଦ୍ରିକ** ପଢ଼ାଇବ
ସାର ଏ ବରଷା ବୋଲି ଷୋଳସା କଣ୍ଠେ ବାହୁ ବେଢ଼ାଇବ ।"
(ଛା. ୨୮।୨୯)

(ଘ) ଗୋ ଶାସ୍ତ୍ର :—

"ରସିତ ଆସିଛି ଭାଇ ତ **ଗୋରୁବିଦ୍ୟା** ନେବାକୁ
କହିଲେ ଯେ ମଲ୍ଲ ପଢ଼ିଲେ ବିଦ୍ୟା ଦେବ ତୁମ୍ଭଙ୍କୁ ।" (ଛା. ୧୩।୨୯)
"ମୋହନ କରରେ ବହନ ଦେଲି **ଗୋଶାସ୍ତ୍ର** ପୋଥି ।"

(ଙ) ମଲ୍ଲବିଦ୍ୟା :— (୨୩।୩୨)

"ଗୋବର୍ଦ୍ଧନଙ୍କୁ ଗୋବର୍ଦ୍ଧନ **ମଲ୍ଲବିଦ୍ୟା** ପାଇଛୁ ।" (୧୩।୧୮)

(ଚ) ବୈଦ୍ୟଶାସ୍ତ୍ର :—

"ବିଶାଖା କହଇ କୃଷ୍ଣନାଗର । ପଦ୍ମିନୀ ମୂଳ ସଂଯୋଗ ହେବାର
ରସ ପରିପାକ ଘଟନା ଯୋଗେ । ଶୁଦ୍ଧମନ୍ତ ହୋଇ ପିଅ ସରାଗେ
ଦେହ ଦାହ କର । ଘୁଞ୍ଚିଯିବ ପାଣ୍ଡୁ କହନ ତର ।" (୩୯।୩୨)

ଅନ୍ୟତ୍ର ୪୮ ଛାନ୍ଦରେ :—

କୃଷ୍ଣନାଗର ସୁର ସେ ବୁଡ଼ିବ । ପଦ୍ମିନୀ ମୂଳ ତହିଁରେ ପଡ଼ିବ ।
ପରିପାକ ହେବ । ମଧୁର ପକ୍ଷେ ଭୋଗ ହୋଇବ । ୧୭ ।

(ଛ) ଜ୍ୟୋତିଷଶାସ୍ତ୍ର :—

"ଗଜବ୍ରୀ ଗତି ବୋହିଲେ ଘନରସ ନୋହିବ ।
ଜ୍ୟେଷ୍ଠ ତାପରେ କି ଆଉ ପ୍ରେମ ବୃଷ୍ଟି ରହିବ ।" (୭୩।୨୭)

(ଜ) ହସ୍ତପରୀକ୍ଷା :—

"ହେ ବ୍ରାହ୍ମଣମଣି ! ଥରେ ଦେଖ ବିଧୁ ପାଣି ।
ବିପ୍ର ବୋଲେ ଅକସ୍ମାତେ ଦେଖିଲେ ଯୁବତୀ ।
ଶଙ୍ଖଯୁକ୍ତ ଶମ୍ଭୁ ବିନା ନ ତୁଟେ ଦୁର୍ଗତି । ଶୋ ପାଣିଚିହ୍ନେ ।
କରିବାର ବିଭୂଷଣ ।" (୭୨।୧୪)

ତନ୍ତ୍ରମନ୍ତ୍ର-କବି ଗୌଡ଼ୀୟ ବୈଷ୍ଣବ ହେଲେ ହେଁ ତାଙ୍କର ତନ୍ତ୍ରମନ୍ତ୍ରରେ ସମଧିକ **ଜ୍ଞାନ ଥିଲା** । ପ୍ରାଚୀନ ଓଡ଼ିଶା ତଥା ଭାରତୀୟ ପରମ୍ପରାରେ ତନ୍ତ୍ରଯୁଗ ତଥା ତାନ୍ତ୍ରିକତା ବହୁ ପ୍ରାଚୀନ । ଓଡ଼ିଶାର ସାମାଜିକ ଚଳଣିରେ ବୌଦ୍ଧଯୁଗ, ବ୍ରାହ୍ମଣ୍ୟ ଯୁଗରେ ତନ୍ତ୍ରର ପ୍ରସାର ଘରେ ଘରେ ଘଟିଥିଲା । ଏବେ ବି ଓଡ଼ିଶାର ପୁରପଲ୍ଲୀରେ ତନ୍ତ୍ର ପ୍ରତି ଲୋକମାନଙ୍କର ବିଶ୍ୱାସ ତୁଟି ନାହିଁ । ସ୍ତମ୍ଭନ, ମୋହନ, ବଶୀକରଣ ଓ ଉଚ୍ଚାଟନ ପ୍ରଭୃତି ତାନ୍ତ୍ରିକ ବିଧି ତନ୍ତ୍ରର ଅନ୍ତର୍ଭୁକ୍ତ ଅଟେ । କବି ଏ ସମସ୍ତ ବିଷୟ କାବ୍ୟର ବିଭିନ୍ନ ସ୍ଥଳରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ଯଥା :—

"ଦେବୀ ଶିକ୍ଷା ମନ୍ତ୍ର ଯନ୍ତ୍ର ବିଧିକ । ଆକର୍ଷିବ ଦେବ ବାମାଦିକ ।
ଅଙ୍ଗନା ବାମ ପାଦଧୂଳି କି । ମନ୍ତ୍ରି ମନ୍ତ୍ରିବ ନିଜ ମଉଳିକି ।" (୨।୨୯)
ସିନ୍ଦୂର ଚନ୍ଦନ ପୀରତି ଧୂତକି । କୁସୁମ ବାଣାୟ ନମଃ ଏଣକି ।
ଏ ଧୂଳି କାମରାଜ ଭେଳକି । ମୋହ ନୋହିବ ଅବଳା କଳକି ।" (୧୦)ଇତ୍ୟାଦି
"ତହିଁର ତତ୍ତ୍ୱ ବ୍ରହ୍ମା କହିଲେ । ତନ୍ତ୍ର ଯନ୍ତ୍ର ମନ୍ତ୍ର ଶିଖାଇ ଦେଲେ ।"
(ଛା. ୨୭।୧୭)

ଏ ସବୁ ବର୍ଣ୍ଣନାରେ ତ କେବଳ ସମାଜଚିତ୍ର ନାହିଁ; କବିଙ୍କର ବହୁ ଶାସ୍ତ୍ରଦର୍ଶିତା ମଧ୍ୟ ତହିଁରେ ପ୍ରତିଫଳିତ ହୋଇଛି ।

# ଅନ୍ୟାନ୍ୟ ସାମାଜିକ ଚଳଣି

## ଅଳଂକାର ଓ ବେଶଭୂଷା—

ସାହିତ୍ୟ ଓ ସମାଜ ଘନିଷ୍ଠ ଭାବରେ ସମ୍ପୃକ୍ତ । ପ୍ରତ୍ୟେକ ଯୁଗରେ କବିମାନଙ୍କର କୃତିରେ କିଛି ନା କିଛି ସାମାଜିକ ପ୍ରଭାବ ପରିଲକ୍ଷିତ ହୋଇଥାଏ । ସାମନ୍ତସିଂହାରଙ୍କର କାବ୍ୟ ତହିଁରୁ ବାଦ ଯାଇନାହିଁ ।

ଓଡ଼ିଶାର ସାମାଜିକ ରୀତିନୀତି, କୁଳଚଳଣି ସବୁର ପ୍ରଭାବରେ ବିଦଗ୍ଧ ଚିନ୍ତାମଣି ପ୍ରାଚୀନ ଓଡ଼ିଆସମାଜର ଚିତ୍ର ଅନେକାଂଶରେ ପ୍ରଦାନ କରିଥାଏ । କବି ଓଡ଼ିଆ ଓ ଓଡ଼ିଆଣୀର ବେଶଭୂଷା ବର୍ଣ୍ଣନାରେ ପୂରା ଓଡ଼ିଆତ୍ୱ ବଜାୟ ରଖିଛନ୍ତି । ନାରୀର ବେଶବର୍ଣ୍ଣନରେ "ଉତ୍କଳ ଦେଶ ବସନ ପିନ୍ଧା ନଗ୍ନା କି ଶୋଭନ ମାରି ଶରୁ ଘରେ ତେଲିଂଗି କୁଞ୍ଚକ ?" ପୁଣି ସିନ୍ଦୂରିଆ ନେତ, ଝିଲିମିଲି ରଙ୍ଗ ଯୁଗା, ଢଙ୍ଗ ଓଢ଼ଣୀ, ପ୍ରଭୃତି ପ୍ରାଚୀନ ନାରୀର ବେଶଭୂଷା ଓ ପରିଧାନର ସୂଚନା ଦେଇଥାଏ । ରୀତିଯୁଗ ସାହିତ୍ୟରେ କାବ୍ୟରେ ଯେପରି ଆଲଙ୍କାରିକତାର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୋଇଥାଏ, ତଦନୁରୂପ ନାରୀର ବେଶଭୂଷା ଓ ଅଳଙ୍କାରରେ ମଧ୍ୟ ଆଧିକ୍ୟ ଦେଖାଯାଇଥାଏ । ସେ କାଳର ନାରୀଅଙ୍ଗରେ ଅଳଙ୍କାରର ସଂଖ୍ୟା ଏତେ ଯେ, ସେ ସବୁର ତାଲିକା ଅତି ଦୀର୍ଘ ହୋଇପଡ଼େ । କହିବାକୁ ଗଲେ ସେତେବେଳେ ନାରୀ ହିଁ ଅଳଙ୍କାର ଓ ଅଳଙ୍କାର ହିଁ ନାରୀ । ଅଳଙ୍କାରର ଗୁରୁଭାରରେ ମଧ୍ୟଯୁଗର କାବ୍ୟନାୟିକା ଅଯଥା ଭାରାକ୍ରାନ୍ତ ହୋଇ ତାହାର ସ୍ୱାଭାବିକ ନୈସର୍ଗ ରୂପମାଧୁରୀ ହରାଇ ବସିଛି । ଭଞ୍ଜୀୟ କାବ୍ୟନାୟିକା ମଧ୍ୟ ଏହି ଦୋଷରେ ଦୁଷ୍ଟ ।

ପ୍ରାଚୀନ ଓଡ଼ିଆ ପୁରାଣମାନଙ୍କରେ ନାରୀର ପ୍ରସାଧନ ଓ ଅଳଙ୍କାରରେ ତେତେ ଆଡ଼ମ୍ବର ଦେଖାଯାଏ ନାହିଁ । ମୋଗଲ ଓ ମରହଟ୍ଟା ଶାସନ କାଳରେ, ନାରୀର ଅଳଙ୍କାର ସଂଖ୍ୟା ଏତେ ବଢ଼ିଯାଇଛି ଯେ ତାହା କହିହେବ ନାହିଁ । ହୋଇପାରେ, ଏହା ଓଡ଼ିଆର ଅତ୍ୟଧିକ କଳାପ୍ରିୟତାର ସୂଚନା । କୌଣସି ଭାରତୀୟ ପ୍ରାଦେଶିକ ସାହିତ୍ୟରେ ନାରୀର ବେଶଭୂଷାରେ ଏ ପ୍ରକାର ଅଳଙ୍କାରବାହୁଲ୍ୟ ନାହିଁ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନାରୀର ଅଳଙ୍କାର ଓ ବେଶଭୂଷା ଏକ ପ୍ରଧାନ ସ୍ଥାନ ଅଧିକାର କରିଛି ଓ ଏହା ରୀତିଯୁଗ କାବ୍ୟର ଅନ୍ୟ ଏକ ବୈଶିଷ୍ଟ୍ୟ । ଆଧୁନିକ ସମାଜରୁ ଏ ସବୁ ଅଳଙ୍କାର କ୍ରମେ ଲୋପ ପାଇଗଲାଣି ଏବଂ ବର୍ଣ୍ଣିତ ଅଳଙ୍କାର ସମୂହର ପ୍ରକୃତ ନମୁନା ପାଇବା ମଧ୍ୟ ଅସମ୍ଭବ ହୋଇପଡ଼େ । କୌତୂହଳ ସମ୍ବରଣ କରି ନ ପାରି ଏଠାରେ ମଧ୍ୟଯୁଗୀୟ ଓଡ଼ିଆ ନାରୀର କେତେକ ଅଳଙ୍କାର ଉଲ୍ଲେଖ କଲି । ବିଦଗ୍ଧ ଚିନ୍ତାମଣିର ୩୦ ଛାନ୍ଦ ଓ

୫୯ ଗ୍ରନ୍ଥରେ ରାଧାଙ୍କର ବେଶଭୂଷା ବର୍ଣ୍ଣନା କରାଯାଇଛି, ଯହିଁରେ ପୁରୀ ଓଡ଼ିଆରୀତି ପ୍ରତିଫଳିତ । ନାରୀର ପ୍ରସାଧନା ଓ ଅଳଙ୍କାରଗୁଡ଼ିକ ହେଲା—

(୧) ରତ୍ନଝମ୍ପି (ବେଣୀ ଅଗ୍ରଭାଗର ଅଳଙ୍କାର) (୨) ବେଣୀ ମୂଳ ବନ୍ଧା ମାଣିକ୍ୟମଣି (୩) କାଠିଆରି ଝରି ମୋଡ଼ (ଗଭାର ଅଳଙ୍କାରବିଶେଷ) (୪) ମୋତି ଗୁଚ୍ଛ (ଗଭା ଉପରସ୍ଥ ଜାଲି) (୫) ରତ୍ନ ସୀମନ୍ତା (ରତ୍ନ ମୁଣ୍ଡା) (୬) ଅଳକା ପାଟି (ଅଳକର ଅଳଙ୍କାରବିଶେଷ) (୭) ଚନ୍ଦ୍ର ଝୁମ୍ପି (ମୁଣ୍ଡା ନିକଟବର୍ତ୍ତୀ ଅଳଙ୍କାର) (୮) ଝିଲମିଲି ମାଳ (କେଶର ମାଳାବିଶେଷ) (୯) ଝଲକପାନ ପଣ୍ଡୁରୀ (କବରୀର ଅଳଙ୍କାର) (୧୦) କୁଣ୍ଡଳ (କର୍ଣ୍ଣଭୂଷଣ) (୧୧) ତାଟଙ୍କ (କର୍ଣ୍ଣଭୂଷଣ) (୧୨) ବାଳୀ (କର୍ଣ୍ଣଭୂଷଣ) (୧୩) ଭ୍ରମ ମଲ୍ଲୀକଢ଼ି (କର୍ଣ୍ଣଭୂଷଣ) (୧୪) ନାକଚଣା (୧୫) ନାଲନଥ (ନାକର ଅଳଙ୍କାର) (୧୬) ରତ୍ନମାଳ (ଗଳାର ହାର) (୧୭) ଗୁପସରି (୧୮) ତାଡ଼, ବାଜୁବନ୍ଧ, ବାହୁଟୁଙ୍ଗା (ହସ୍ତର ଅଳଙ୍କାର) (୧୯) କଡ଼ିଆଳ (ହାତର ଅଳଙ୍କାର) (୨୦) ଦନ୍ତଦନ୍ତୀ ଚୂଡ଼ି (ହାତୀଦାନ୍ତଚୂଡ଼ି) (୨୧) ବଳା (୨୨) ନୂପୁର (୨୩) କିଙ୍କିଣୀ (୨୪) ଚଉସରି (ଗଭାର ଅଳଙ୍କାର) (୨୫) ହେମନ୍ଦୁବର୍ତ୍ତୀ (ଗଭାର ଅଳଙ୍କାର) (୨୬) ଝୋଡ଼ର (୨୭) ବାହୁଟି (୨୮) କଙ୍କଣ (୨୯) ମଲ୍ଲି (୩୦) ହସକ (୩୧) ଝୁଣ୍ଟିଆ (୩୨) ବନ୍ଧଆ ଇତ୍ୟାଦି ।

ଯେ କୌଣସି ନାରୀ ହେଉ ପଛେ, ତାହାର ଅଙ୍ଗରେ ଏତେଗୁଡ଼ିଏ ଅଳଙ୍କାର ଏକଥର ପିନ୍ଧିବା କଦାପି ସମ୍ଭବ ନୁହେଁ । କେବଳ ବର୍ଣ୍ଣନାବୈଚିତ୍ର୍ୟ ସୃଷ୍ଟି କରିବା ପାଇଁ କବି ଏ ପ୍ରକାର ପାରମ୍ପରିକ ନାୟିକା । ବେଶଭୂଷା ବର୍ଣ୍ଣନା ରୀତି ଗ୍ରହଣ କରିଛନ୍ତି ।

ସେତେବେଳକାର ନାରୀର ଅନ୍ୟାନ୍ୟ ପ୍ରସାଧନୀ ମଧ୍ୟରେ ପ୍ରାଚୀନ ବେଶକରଣ ପଦ୍ଧତି ଅନୁସରଣ କରାଯାଇଛି । ଗଣ୍ଡଦେଶରେ ମକରୀ ଓ ଭ୍ରମରିକା ଶ୍ରେଣୀର ଚିତ୍ର, ସୁବାସିତ ତୈଳରେ କେଶ ପ୍ରସାଧନ, ପଦ୍ମରାଗ ରଞ୍ଜିତ ପାନିଆ, ଅଳକର ନିମ୍ନ ଦେଶରେ ଟୋପି ଟୋପି ଚନ୍ଦନର ଚିତ୍ର, ଓଷ୍ଠରେ କସ୍ତୁରୀ-ଭ୍ରମରୀ ଚିତ୍ର, ନାସାରେ ତିଳକ-କସ୍ତୁରୀ, କୁଚଯୁଗଳରେ ମୃଗମଦର ଚିତ୍ର, ପଦରେ ସରୁ ସରୁ ଲାକ୍ଷାରସରେ ଚିତ୍ର, ଓଷ୍ଠ ଓ ଦନ୍ତର ରଙ୍ଗ ନିମନ୍ତେ ତାମ୍ବୁଲ, ବା ବଡ଼ିଆ, ଚକ୍ଷୁରେ କଜ୍ଜ୍ୱଳ, ସୀମନ୍ତରେ ସିନ୍ଦୁର ବିନ୍ଦୁ, ଶରୀରରେ ଚତୁଃସମ ବିଲେପନ ପ୍ରଭୃତି ସେତେ-ବେଳକାର ନାରୀର ପ୍ରସାଧନ ପ୍ରଣାଳୀ ରାଧାଙ୍କର ବେଶକରଣ ପ୍ରସଙ୍ଗରେ କବି ଉଲ୍ଲେଖ କରିଅଛନ୍ତି ।

ଲାବଣ୍ୟବତୀ ବା ବିଦଗ୍ଧ ଚିନ୍ତାମଣିର ନାରୀ ଆଭିଜାତ୍ୟସମ୍ପନ୍ନା ନାରୀ ତାହାର ଲାଗି ବହୁ ଦାସଦାସୀ ବା ପରିଚାରୀ ସତତ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ । କେହି ଶ୍ରୀରାଧାଙ୍କର ଗମନ ନିମିତ୍ତ ପଥ ପରିଷ୍କାର କରି ପାଏଡ଼ା ପାଡ଼ୁଛି, କେହି ବା ବଡ଼ିଆ ଭାଙ୍ଗୁଛି, ଅନ୍ୟ କେହି ଜଳଧର ବା ପିକଧର (ପିକଦାନ), କେହି ବା ଚାମର ଓ ତାମ୍ବୁଲ ବଟିକା ଧରି ନାୟିକାର ପଥ ଅନୁସରଣ କରୁଛନ୍ତି । କାବ୍ୟର ଲକ୍ଷ୍ୟ ହେଲା

ନାୟକ ନାୟିକାଙ୍କର ବିଚ୍ଛେଦ ଉପଶମିତକରି ଉଭୟଙ୍କର ମିଳନ କରାଇବା ଏବଂ ଏହି ଲକ୍ଷ୍ୟରେ ଚତୁରା ପରିଚାରିକା ଓ ସଖୀମାନେ କାବ୍ୟର ମୂଳରୁ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରିଅଛନ୍ତି । ମଧ୍ୟଯୁଗ ଓଡ଼ିଆ ସମାଜରେ ଆଭିଜାତ୍ୟସମ୍ପନ୍ନା ଉଚ୍ଚବଂଶଜା ଶିକ୍ଷିତା ନାରୀର ଏ ହେଲା ରୂପାୟନ । ଏ ସମସ୍ତ କାବ୍ୟରେ ମଧ୍ୟବିତ୍ତ ସମାଜ ବା ଦରିଦ୍ର ପରିବାରର ନାରୀର ସ୍ଥାନ ନାହିଁ । ବିଦଗ୍ଧ ଚିନ୍ତାମଣିର ନାୟିକା ଶ୍ରୀରାଧା ସୌନ୍ଦର୍ଯ୍ୟପ୍ରିୟା, ଲଜ୍ଜାଶୀଳା, ଅଭିମାନିନୀ, ବିରହକାତରା ଓ ପ୍ରେମପାଗଳିନୀ ରୂପେ ଚିତ୍ରିତା । ଏହି କାବ୍ୟରେ ନାରୀର ଲକ୍ଷ୍ୟ ହେଲା ପ୍ରେମ—ପ୍ରେମ ବ୍ୟତୀତ ଅନ୍ୟ କିଛି ନୁହେଁ ।

କାବ୍ୟର ନାୟିକା ଚତୁଃଷଷ୍ଟି-କଳା ନିପୁଣା ଓ ଶିକ୍ଷିତା ମଧ୍ୟ । ସେ ପ୍ରେମିକ ନାୟକଙ୍କୁ ପତ୍ର ଲେଖିଛି—

"ପୀତ କାଗଜରେ ଲେଖନ କାଳି । ବେନିବର୍ଣ୍ଣ ଛଳେ ଲେଖିଛି ଭାଳି ।
ସୁବର୍ଣ୍ଣ ସୁବର୍ଣ୍ଣ ବିବର୍ଣ୍ଣ ପରି । ଭରି ଭରି ନେଇ ଚଉର ତୋରା ।
ପୀତ କଣ୍ଟେ ଲୁଚିତ । ଶିଶୁଆଳି-ଆଳି ପନ୍ତି ଯେମନ୍ତ ।" ୫୫।୧୦
"ସମ ସମଣିର ଘନ ବୋଲେ । ମାଝ ବିଭଙ୍ଗ ନାହିଁ ଏକ ଦଳ
ଟିପ ଦେବ ଅବା କେଉଁ ବିବେକ । ଏହି ଭୁଲକୁ କେ ହେବ ଗ୍ରାହକ ।" (୧୧)

ଇତ୍ୟାଦି ପଦରେ ନାରୀର ପତ୍ର ଲେଖା ଏବଂ ସୁନ୍ଦର ଅକ୍ଷରଦେଲ ନାରୀର ଶିକ୍ଷା ଏବଂ କଳା କୁଶଳତାର ପରିଚୟ ଦେଇଥାଏ । ଅନ୍ୟତ୍ର କେତକୀ ଦଳରେ ପତ୍ର ଲେଖାଯିବାର ବିଧି ବର୍ଣ୍ଣନା କରାଯାଇଛି ।

ସଙ୍ଗୀତପ୍ରିୟା ନାରୀମାନଙ୍କର ବାଦ୍ୟଯନ୍ତ୍ର ଅନୁରାଗ ପ୍ରସଙ୍ଗ କେମେ ମଧ୍ୟ ବର୍ଣ୍ଣିତ ହୋଇଛି । ବୀଣା, ରବାବ, ମୁରଜ, ମନ୍ଦିରା, ଡମ୍ବୁର, ଖଞ୍ଜଣୀ, ଜଳତରଙ୍ଗ ଓ ମୋଚଙ୍ଗ ପ୍ରଭୃତି ବାଦ୍ୟବାଦନ ସହିତ ନୃତ୍ୟକାରିଣୀମାନଙ୍କର ଅଭିନୟ ନାରୀର ସଙ୍ଗୀତପ୍ରିୟତା ପ୍ରତି ପାଠକର ଦୃଷ୍ଟି ଆକର୍ଷଣ କରାଇଥାଏ ।

ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ମଧ୍ୟଯୁଗୀୟ ରୀତିକାବ୍ୟରେ ପୁରୁଷ ଚରିତ୍ର ଗୌଣ ଓ ନାରୀଚରିତ୍ର ଚିତ୍ରଣ ମୁଖ୍ୟ ହୋଇ ପଡ଼ିଛି । ଯୁଗେ ଯୁଗେ ମଧ୍ୟଯୁଗୀୟ କାବ୍ୟରେ ନାରୀ ହୋଇ ପଡ଼ିଛି କାବ୍ୟକବିତାରେ ପ୍ରଧାନ ଆକର୍ଷଣର ବସ୍ତୁ । ନାରୀକୁ ସୌନ୍ଦର୍ଯ୍ୟାନ୍ୱିତ କରି ଚିତ୍ରଣ କରିବା ପାଇଁ କବି ସର୍ବଦା ଚରମ ଚେଷ୍ଟା କରିଛି ଏବଂ ସେଇଥିରେ ହିଁ ହେଉଛି କାବ୍ୟର ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣତା । ବିଦଗ୍ଧ ଚିନ୍ତାମଣିରେ ଅନ୍ୟାନ୍ୟ ସାମାଜିକ ଚିତ୍ର ସଙ୍ଗରେ ୭୫ ଛାନ୍ଦରେ ସମାଜର ଅନ୍ୟାନ୍ୟ ସ୍ତରର ବିଶେଷ ଭାବରେ ନିମ୍ନସ୍ତରର କେତେକ ଚିତ୍ର ଦିଆଯାଇଛି । କୃଷ୍ଣଙ୍କର ଗୋପନଗରର ବିଭିନ୍ନ ବଣିଜ ନିରତା ନାରୀମାନଙ୍କ ସହିତ ଗୁପ୍ତଯୋଗ ଖୁବ୍ ନିମ୍ନସ୍ତରର ବର୍ଣ୍ଣନା ହୋଇପଡ଼ିଛି ଏବଂ ଏହି ପ୍ରସଙ୍ଗରେ ଶଙ୍ଖାରୀ, ଗୋପାଳୁଣୀ, ପାଟହାରିଣୀ, ସୁନାରୀ, କଂସାରୁଣୀ, କାଚରାଣୀ, କୈବର୍ତ୍ତୀ ଓ ରଙ୍ଗଣୀ ପ୍ରଭୃତି ବିଭିନ୍ନ

ନାରୀମାନଙ୍କର ଚିତ୍ର ଦିଆଯାଇଛି । କିନ୍ତୁ ଏ ବର୍ଣ୍ଣନା କବି ଲେଖନୀରେ ତେତେ ଉନ୍ନତସ୍ତର ଲଭକରି ନାହିଁ । କିନ୍ତୁ ଅନ୍ୟ ସ୍ଥଳରେ କବି ସାଧାରଣ ଆଲଙ୍କାରିକ ରୀତି ଅନୁସରଣ କରି ବିଭିନ୍ନ ନାୟିକା, ଯଥା :—ସ୍ୱାଧୀନଭର୍ତ୍ତୃକା, ପ୍ରୋଷିତଭର୍ତ୍ତୃକା, ବିପ୍ରଲବ୍‌ଧା, ବାସକସଜ୍ଜା, ବିରହୋତ୍କଣ୍ଠିତା, ଖଣ୍ଡିତା, କଳହାନ୍ତରିତା, ଗଣିକା, ପ୍ରଗଲ୍‌ଭା, ପଦ୍ମିନୀ, ମୁଗ୍‌ଧା ଓ ସ୍ୱକୀୟା ପ୍ରଭୃତି ବର୍ଣ୍ଣନା କରିବା ସହିତ ସେମାନଙ୍କର ଲକ୍ଷଣ ପ୍ରଦାନ କରିଛନ୍ତି ।

## ଖାଦ୍ୟ—

ଅନ୍ୟାନ୍ୟ ସାମାଜିକ ଚିତ୍ର ପ୍ରସଙ୍ଗରେ କବି ଓଡ଼ିଆର ଖାଦ୍ୟ ଓ ରନ୍ଧନ-ପ୍ରଣାଳୀର ମଧ୍ୟ ବର୍ଣ୍ଣନା ଦେଇଛନ୍ତି । ଯାହାକି ମହାଭାରତକାଳୀନ 'ଛଉଷଠି ଗଉଷଠି ନଳ' ଓ 'ଷଡ଼ରସ' ଭୋଜନ ରୀତିର ସୂଚନା ୬୮ ଛାନ୍ଦରେ ପ୍ରକାଶ ଲଭ କରିଛି । ଅନ୍ୟାନ୍ୟ ମିଷ୍ଟାନ୍ନ ଖାଦ୍ୟର ବର୍ଣ୍ଣନା "କଣେଇଙ୍କ ପାକ କମିଦ" (ଛା. ୬୦) ଛାନ୍ଦରେ ବିସ୍ତୃତ ଭାବରେ ରୂପାୟିତ ହୋଇଛି । ବିଭିନ୍ନ ମିଷ୍ଟାନ୍ନ ଓ ଖାଦ୍ୟ ପର୍ଯ୍ୟାୟରେ କ୍ଷୀର, ନାଡ଼ୀ, ବାସନ୍ତୀ, ଫେଣୀ, ଚନ୍ଦ୍ରକାନ୍ତ, କାଦମ୍ବିନୀ, ଲଡ଼ୁକା, କୁନ୍ଦଲଡ଼ା, ସୀତାଅନ୍ନ, ଝିଲି, ମୋତିଚୂର୍ଣ୍ଣ, ତିଳଲଡ଼ୁ, ଗୋଟିକା, ଅଧାମ, ଉଖୁଡ଼ା, ଦହିବରା, ଆରିସା, ଲବଣୀ, ସୁବାସିତ ଘୃତ, ମିଶ୍ରି, ଛେନା, ଦହି, ହଂସକେଳି ଓ ଚଟକ ପ୍ରଭୃତି ମିଷ୍ଟାନ୍ନ ତତ୍‌କାଳୀନ ଓଡ଼ିଶାରେ ବ୍ୟବହୃତ ମିଷ୍ଟାନ୍ନର ପରିଚୟ ପ୍ରଦାନ କରିଥାଏ । ଭୋଜନ ଶେଷରେ ଧନିଆ, ତାମ୍ବୁଳ ପ୍ରଭୃତି ମୁଖବାସ ଓ ନିର୍ମାଲ୍ୟ ସେବନର ବର୍ଣ୍ଣନା ଦିଆଯାଇଛି ।

## ଲୋକ ବିଶ୍ୱାସ—

ଓଡ଼ିଶାର ଚଳନ୍ତି ଲୋକ ବିଶ୍ୱାସର ଧାରା କାବ୍ୟର ବିଭିନ୍ନ ସ୍ଥଳରେ ରୂପାୟିତ ହୋଇଛି ଯେପରି ଅପଠଆଣୀ ପିଲାଙ୍କର ନାକ କାନ ଫୋଡ଼ିବା, ଦୃଷ୍ଟି ନ ପଡ଼ିବା ପାଇଁ କପାଳରେ କଜ୍ୱଳ ବିନ୍ଦୁଦେବା, ଆପଦହରଣ ନିମିତ୍ତ ଶରୀରରେ ଗୋରଜଲେପନ, ଡାଆଣୀ ଭୟରେ ପିଲାଙ୍କୁ ସୁନ୍ଦର ଲୁଗା ନ ପିନ୍ଧାଇବା ପ୍ରଭୃତି ଲୋକ ବିଶ୍ୱାସ କବି ସୁନ୍ଦର ଭାବରେ ସ୍ଥଳବିଶେଷରେ ବର୍ଣ୍ଣନା କରିଅଛନ୍ତି । ଯେପରି—

"ଅପଠ୍ୟାଣି ବୋଲି ମୁଁ ବିନ୍ଧିଲି ନାକ କାନ
ଖଞ୍ଜିଲି ବସଣୀ ବାଲୀ ଲୋକନେ ଶୋଭନ ।" (୬।୩୫)
"ମନ୍ଦଦୃଷ୍ଟି ନ ବାଧିବ ବିସ୍ମୃରେ ମୋହର
କଳାବିନ୍ଦୁ ଦେଇ ଥାଇଁ କପାଳେ ତୋହର ।" ।୩୬।
"ଗୋରଜ ଲେପଇଁ ଅଙ୍ଗେ ଆପଦ ହରଣେ
ପାଦରଜ ଦେଉଥାନ୍ତି ବୃଦ୍ଧ ଗୋପୀ ଗଣେ ।" ।୧୭।

ଅନ୍ୟତ୍ର ଅନ୍ୟାନ୍ୟ ଲୋକବିଶ୍ୱାସର ମଧ୍ୟ ବର୍ଣ୍ଣନା ରହିଛି ।

ଯେପରି—

"ଯେଉଁ କାଳେ ଅନୁକୂଳ ବିଧି । ସେହିକାଳେ ଅନୁକୂଳ ସିଦ୍ଧି ।
ଜୟ ଜୟ ବାଣୀ ବିଜୟ ବେଳରେ ପଞ୍ଚଶ୍ରୀ ସାରିକା କଲି ସିଦ୍ଧି ।
ଆଶା ବୃଦ୍ଧି । ଦାଣ୍ଡେ ଆଦିଗ୍ଧ ଡାକିଲେ ଦଧି ଦଧି ।" (୭୧।୪)
"ଦାର୍ଯ୍ୟ ଆସି ଡାକେ ମତ୍ସ୍ୟ ମତ୍ସ୍ୟ । କମ୍ବୁ ଶମ୍ଭୁଆଳେ ଶୁଭେ ସ୍ୱଚ୍ଛ ।
ମନ୍ଦ ମନ୍ଦ ଗନ୍ଧବହ ବହୁଅଛି ଅଛିଦ୍ର ଭଦ୍ର ଏ ନୋହେ ମିଛ ।
ଦେଖି ସୁଖୀ । ଅକସ୍ମାତ ଉଡ଼ିଗଲା ପକ୍ଷୀ ।" ୫ ।
"ନକୁଳ କୁଳ ପୁରତେ ଗୃହିଁ । ଚଉ ଉପଦ୍ରବର ସୀମା ନାହିଁ ।
ବାମେ ଶିବା ଶବ କୁମ୍ଭ ଦେଖି ଦନ୍ତି କୁମ୍ଭୀ କୁମ୍ଭସ୍ତନୀ ହୃଦେ ବହି
ଦକ୍ଷିଣରେ । ଦ୍ୱିଜ ଗଜ ଗୋ ମିଥୁନ ମୃଗ ଚରେ ।" ୭ । ଇତ୍ୟାଦି ।

ଅନ୍ୟାନ୍ୟ ସାମାଜିକ ରୀତି ଓ ଲୋକବିଶ୍ୱାସ ପ୍ରସଙ୍ଗରେ ବଳି ପ୍ରଥା ମଧ୍ୟ ବର୍ଣ୍ଣିତ ହୋଇଛି । ଯେପରି—

"କାଳୀଙ୍କ ବଳି ଦେବାରୁ ଛେଳି ଆଳି ମେଷ ହିଁ ଶେଷ ହୋଇଲଣି ।"
(୨୫।୧୧) ଇତ୍ୟାଦି ।

ବିଦଗ୍ଧ ଚିନ୍ତାମଣି କାବ୍ୟରେ ଏହିପରି ଦେଖିବାକୁ ଗଲେ ଓଡ଼ିଆ ସମାଜର ଚିତ୍ର ସ୍ଥଳବିଶେଷରେ ଚିତ୍ରଣ କରିବାକୁ କବି ଭୁଲିନାହାନ୍ତି । କେତେକ ଆଲୋଚକ ଆକ୍ଷେପ କରି କହନ୍ତି ଯେ, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ତତ୍କାଳୀନ ସମାଜଠାରୁ ଦୂରରେ ଥିଲା; କିନ୍ତୁ ତାହା ଯଥାର୍ଥରେ ସତ୍ୟ ନୁହେଁ ।

## ବିଦଗ୍ଧ ଚିନ୍ତାମଣିରେ ପ୍ରକୃତି ଚିତ୍ରଣ—

ପ୍ରାଚୀନ କାବ୍ୟରେ ପ୍ରକୃତି ଚିତ୍ରଣ ନେଇ ଅନେକ ଆଲୋଚକ ମତ ଦିଅନ୍ତି ଯେ ପ୍ରାଚୀନ ଯୁଗର କବିମାନେ ସେମାନଙ୍କ ଚତୁଃପାର୍ଶ୍ୱରେ ଥିବା ପ୍ରକୃତିର ସୁମନୋହର ଦୃଶ୍ୟାବଳୀ ପ୍ରତି ବିମୁଖ ଥିଲେ; କିନ୍ତୁ ପ୍ରକୃତରେ ଏହା ସତ୍ୟ ନୁହେଁ । ପ୍ରାଚୀନ ଓଡ଼ିଆ କାବ୍ୟକବିତା ମୁଖ୍ୟତଃ ପ୍ରେମମୂଳକ । ଏଥିରେ ନାୟକନାୟିକାଙ୍କର ମିଳନ ଓ ବିରହ ବର୍ଣ୍ଣନା ସ୍ଥାନ ଲାଭ କରିଛି ଓ ଗୌଣସ୍ଥାନ ଅଧିକାର କରିଛି ପ୍ରକୃତି ଚିତ୍ରଣ ।

କାବ୍ୟାଦର୍ଶରେ କାବ୍ୟରେ ପ୍ରକୃତି ବର୍ଣ୍ଣନା ସୀମିତ । ଯେପରି—ନଗର, ଅର୍ଣ୍ଣବ, ଶୈଳ, ଚନ୍ଦ୍ରୋର୍କୋଦୟ ବର୍ଣ୍ଣନା, ଉଦ୍ୟାନ ଓ ସଲିଳକ୍ରୀଡ଼ା ପ୍ରକୃତି ବର୍ଣ୍ଣନାର ଅନ୍ତର୍ଭୁକ୍ତ ହେବାର ଉଲ୍ଲେଖ ରହିଛି । ଯେପରି—

"ନଗରାର୍ଣ୍ଣବ ଶୈଳର୍ତ୍ତୁ ଚନ୍ଦ୍ରୋର୍କୋଦୟ ବର୍ଣ୍ଣନମ୍
ଉଦ୍ୟାନ ସଲିଳକ୍ରୀଡ଼ା ମଧୁପାନରତୋତ୍ସବୈ ।"

ଓଡ଼ିଆ କାବ୍ୟ ରଚୟିତାଗଣ ମୁଖ୍ୟତଃ କାବ୍ୟ ରଚନାସ୍ଥଳରେ ପୂର୍ବପୂର୍ବ ସଂସ୍କୃତ କାବ୍ୟଗୁଡ଼ିକର ଆଦର୍ଶ ଗ୍ରହଣ କଲେ ଏବଂ ତଦନୁଯାୟୀ କାବ୍ୟରେ ଯଥାଯଥ ଭାବରେ ପ୍ରକୃତି ଚିତ୍ରଣ କଲେ ।

ଭଞ୍ଜୀୟ କାବ୍ୟସମୂହରେ ନାୟକନାୟିକାର ମିଳନ ଓ ବିରହରେ ପ୍ରକୃତି ସହାନୁଭୂତିଶୀଳତା ପ୍ରଦର୍ଶନ କରିଛି । ବିରହେ ଗ୍ରୀଷ୍ମଋତୁ, ବିରହେ ବର୍ଷାଋତୁ, ବିରହେ ଶୀତ, ବସନ୍ତ ଓ ହେମନ୍ତ ଋତୁ ପ୍ରଭୃତିର ବର୍ଣ୍ଣନା ବିଶେଷ ଜୀବନ୍ତ ଓ ପ୍ରାଣବନ୍ତ । ଅଭିମନ୍ୟୁ ପୂର୍ବପୂର୍ବ ଭଞ୍ଜୀୟ ଗ୍ରନ୍ଥରେ ପ୍ରକୃତି ଚିତ୍ରଣ କରିଅଛନ୍ତି । ମଧ୍ୟଯୁଗୀୟ କବିଗଣ ପ୍ରକୃତି ଚିତ୍ରଣରେ ଶୃଙ୍ଗାରିକତାର ଏକ ମଧୁର ସମନ୍ୱୟ ଆଣିଛନ୍ତି ଅର୍ଥାତ୍ ସବୁଜ ପ୍ରକୃତି ବର୍ଣ୍ଣନା ମଧ୍ୟରେ ବିପ୍ରଲମ୍ଭ ଓ ସମ୍ଭୋଗ ଶୃଙ୍ଗାର ରୂପାୟିତ ହୋଇଛି ଏବଂ ଅଭିମନ୍ୟୁ ତହିଁରୁ ବାଦ ଯାଇନାହାନ୍ତି ।

ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣିର ବିଭିନ୍ନ ସ୍ଥଳରେ ପ୍ରକୃତିର ସୁମନୋହର ଚିତ୍ରଣ ରହିଛି । ବିଦଗ୍ଧ ଚିନ୍ତାମଣିର ୩୦ ଛାନ୍ଦରେ ରସିକ କବି ଶରତ୍‌କାଳୀନ ସନ୍ଧ୍ୟାର ଯେଉଁ କମନୀୟ ଛବି ବର୍ଣ୍ଣନା କରିଅଛନ୍ତି, ତାହା ସମଗ୍ର ମଧ୍ୟଯୁଗର କାବ୍ୟ ସାହିତ୍ୟରେ ଏକ ଅପୂର୍ବ ଜୀବନ୍ତ ପ୍ରକୃତି ବର୍ଣ୍ଣନା । ଶରତ ସମୟର ମେଘବିମୁକ୍ତ ନିର୍ମଳ ନୀଳ ଆକାଶ ପଶ୍ଚିମାଂଶରେ ଅସ୍ତମାନ ସୂର୍ଯ୍ୟ ଓ ପୂର୍ବଦିଗରେ ନବୋଦିତ ପୂର୍ଣ୍ଣିମାଚନ୍ଦ୍ର —ଆକାଶରେ ଘଟିଛି ମଧୁର ବର୍ଣୋତ୍ସବର ଲହରୀ, ଅସ୍ତୋନ୍ମୁଖ ସୂର୍ଯ୍ୟଙ୍କର ଆରକ୍ତ କିରଣ ଏବଂ ନବୋଦିତ ପୂର୍ଣ୍ଣିମା ଚନ୍ଦ୍ରର ଶୁଭ୍ର ଜ୍ୟୋସ୍ନାର ମଧୁର ମିଳନ ଘଟିଛି ଏବଂ ଏହି ମିଳନ ପ୍ରକାରାନ୍ତରେ ଶ୍ରୀରାଧା ଏବଂ ଶ୍ରୀକୃଷ୍ଣଙ୍କ ଅନୁରାଗ ଓ ମିଳନର ସଙ୍କେତ ମଧ୍ୟ ଦେଇଛି । କବିଲେଖନୀ ଏ ପ୍ରକାର ପ୍ରକୃତିର ସୌନ୍ଦର୍ଯ୍ୟରେ ବିଭୋର ହୋଇ ଲେଖି ଚାଲିଛି—

"ଏ ଉତ୍ତାରୁ ସୁବିଦଗ୍ଧ ସାବଧାନେ ଘେନ ରସ<br>
ନିଶିମୁଖ ଆଗମନ ଦିବସ ଶେଷ<br>
ବାରୁଣୀ ବିଳାସୀ ରବି ପୂର୍ବେ ଉଦେ ଶଶୀଛବି<br>
ରକ୍ତିମା ଶୁକ୍ଳିମା ମନୋହର ବିକାଶ ।<br>
ସହଜରେ ଶରଦକାଳ<br>
ଋତୁମୁଖ ଜାତ ତହିଁ ନିଶି ମଞ୍ଜୁଳ ।"

"ବିୟୁର କି ପଦ୍ମଭୋଜି ସୁଧା ଅନୁରାଗ ଘେନି<br>
ବିଶ୍ୱ ତୁଳନାରେ ତୁଳା କଳନା କରେ<br>
ଉଶ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା<br>
ଉଚ୍ଚ ନୀଚ ନୀଚ ଉଚ୍ଚ କଣ୍ଟା ବଧିରେ<br>
ସୁଧା ଅନୁରାଗ ସଙ୍ଗତେ<br>
ତୁଳା କରିପାରିବ କେ କହ କେମନ୍ତେ" । ୨ ।

"ତାତ ସିଙ୍ଗିକି ବଳିବି ବିଗ୍ରହ କି କାମଦେବ
ମାଣିକ୍ୟ ସ୍ୱର୍ଗରଥାଙ୍ଗ ପେଷି ଦେଇଛି
ବିୟୋଗୀ ସୁଖ ଦୁଃଖଦ ସଂଯୋଗୀ ସୁଖ ଦୁଃଖଦ
ପରସ୍ପରେ ବିରୋଧାଭାସକୁ କରୁଛି
ତମେ ନାଶନେ ତ ପ୍ରୟୋଗ ।
ତମ ପଶେ ତମୁ ଆସେ ଏ କି ସଂଯୋଗ ।" ୩ ।

କବି ଶ୍ରୁତି ଉତ୍ପ୍ରେକ୍ଷା କରି ଲେଖିଛନ୍ତି ଯେ ଦାଗ ବଣିକ ପୋହଳା ଡାକ୍ଲଣୀ ଦିଆ, ହାତୀଦାନ୍ତର ସରୁଆ ଫିଟାଇ ଭିନ୍ନ ଯାଗାରେ ରଖି ଅତି ଉଜ୍ଜ୍ୱଳ ମୋତିଗୁଡ଼ିକ ଗଣି ଦେଖୁଛି କି ? ଏବଂ ଏହି ବିଷୟକୁ ଲକ୍ଷ୍ୟ କରି କବି ଲେଖିଛନ୍ତି—

"ଦନ୍ତ ଦନ୍ତ ସମୁଦ୍ଗକ ପ୍ରବାଳ ଡାକ୍ଲଣୀ ଏକ
ଦାଗବଣିକ କି ଫେଡ଼ି ଭିନ୍ନେ ଥୋଇଛି
ତାର ତାର ତାର ମୋତି ଗୋଟି ଗୋଟିକେ ଗଣନ୍ତି
କରୁଛି ପରି ଅମ୍ବରେ ପ୍ରତେ ହେଉଛି
ସ୍ଥାନସ୍ଥିତ ନୀଳେନ୍ଦ୍ର ମଣି
ଗୋଟିକେ ବିଭ୍ରମେ ଭାଲେ କି ହେବ ଗଣି ।" ୪ ।

କ୍ରମେ ସୂର୍ଯ୍ୟ ଅସ୍ତଗଲେ ଏବଂ ବିଧାତା ଜ୍ୟୋତ୍ସ୍ନାରୂପକ ରଜତ ସୃଷ୍ଟି ସର୍ଜନା କରି ବସିଲେ । ଚତୁର୍ଦ୍ଦିଗରେ ଶାରଦୀୟ ଜ୍ୟୋତ୍ସ୍ନାର ପ୍ଲାବନ, ଶୁକ୍ଲତାରେ କେହି କାହାକୁ ଚିହ୍ନି ପାରୁ ନାହାନ୍ତି, କବି ଏଠାରେ ସୁନ୍ଦର ବିଭ୍ରମ ଅଳଂକାର ସୃଷ୍ଟି କରି ଲେଖିଅଛନ୍ତି—

"ଶିବାଙ୍କୁ ଖୋଜିଲେ ଭୀମ ଅଛନ୍ତି ନାହାନ୍ତି ଭୀମ
ଭୀମ ଗଙ୍ଗାଙ୍କୁ ଲୋଡ଼ିଲେ ଜଟା ଫିଟାଇ
କୁସୁମବତୀ ବ୍ରତତୀ ଅଦୃଷ୍ଟ ରଜାର ସିତ
ମୋତିହାର ବତୀ ମତ ଚନ୍ଦ୍ରାକୁ ପାଇ
ଭ୍ରମରେ ଭ୍ରମରେ ଭ୍ରମନ୍ତି
ମଧୁପ ପରିୟେ କୁମୁଦିନୀ ଲୋଡ଼ନ୍ତି ।"

୪୫ ଛାନ୍ଦରେ ଶ୍ରୀରାଧାଙ୍କର କାନନ ବିଳାସ ପ୍ରସଙ୍ଗରେ ବନପ୍ରକୃତିର ସୁନ୍ଦର ରୂପ ମଧ୍ୟ ପ୍ରକାଶଲାଭ କରିଛି । ଯେପରି—

"କୁସୁମ ସୁଷମ ଲତା ଧନୁ ଧରି କରିଛି ନିଆଳି ଶର
ଆଳି ଆବଳୀ ପୁଞ୍ଜ ପୁଣ ଝିଙ୍କାରୀ ତାକ କପଣି ଝଙ୍କାର ସେ ।
ରବ କଳରବର । କୁତ ହୁଁ କୁତ କି ବାରବାର ସେ ।" (୪୫।୫)
"ଝୁରି ଝୁରି ଅନା ଅନା ଅପ୍ରକାଶ କିଂଶୁକ ପଂଚଶାୟକ

ତାରକାତ କେତକୀ ତ ଯମଦାଡ଼କୁ ନ୍ତ ବିଯୋଗୀ ଅନ୍ତକ ସେ
ଚନ୍ଦ ପରାସ୍ତେ । ଭ୍ରମ ଭ୍ରମର ଭସ୍ମ କରାଏ ସେ ।" ୭ ।
"କଳି କମଳ କଣ୍ଟକ ନଳି ଅଳି ଗୁଞ୍ଜ ପରାଗ ବାରୁଦ
କରି ମଶଚକା ଅନଳ ଅନିଳ କଲେ ଗୃହଧୂଏ ଖେଦ ସେ ।
ପବି ମାଧବୀ ଧରେ । ଶଙ୍ଖ ଦେଲେ କ ପ୍ରୀତି ଯୂଥରେ ସେ ।"

ଏହାଛଡ଼ା ଅନ୍ୟ କେତେକ ଛାନ୍ଦରେ ମଧ୍ୟ ପ୍ରକୃତିର ସୁନ୍ଦର ଚିତ୍ର ରହିଛି । ଯେପରି—

"ପୁଣି ବୋଲନ୍ତି ଉଭୟେ ମନ୍ମଥେ ।
କୃଷ୍ଣ ଛଦ୍ରେ ମୁଖ ଦେଖି ଲକ୍ଷିତେ
ସୁଧାକର ଅସ୍ତାଚଳ ଭଜିଲେ ।
ତାରାଏ କାନ୍ତି ବର୍ଣ୍ଣିଗା ହୋଇଲେ ।
ପ୍ରକଟ, ହଟହଟା ବାଧିରେ । କୁମୁଦ ବମୁଦ ଖ୍ୟାତ ଲୋକରେ ।" ।୧୪।
ବାଟପୀ ବକଲେ ରୋଦନ ମଣି ।
ତୁଷାର ଧାରପାତ ଅଶ୍ରୁ ଜାଣି ।
ଶେଫାଳିକା ଅନୁରାଗ ଦେଖାଇ ।
ପ୍ରସନ୍ନ ସୁମନ ଦେଲା ପକାଇ ।
ଚକୋର ନେତ୍ର ଶ୍ରୀମୁଖେ ଲଗ୍ନ । କୁ ହୁ କୁ ହୁ ଖ୍ୟାତ କୋକିଳସ୍ୱନ ।"

ଏହିପରି ଅରଣ୍ୟ ପ୍ରକୃତିର ନାୟକ ନାୟିକାଙ୍କର ମିଳନରେ ସମଭାବ ସମ୍ପନ୍ନ ହୋଇପଡ଼ିଛି ଓ ଅନୁରୂପ ଭାବ ପ୍ରକାଶ କରିଛି । କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳମ୍‌ର ଆଶ୍ରମ ପ୍ରକୃତି ବର୍ଣ୍ଣନାର ପ୍ରଭାବ ଏଠାରେ ପଡ଼ିଥିବାର ଲକ୍ଷ୍ୟ କରାଯାଇଥାଏ । ଶକୁନ୍ତଳା ଓ ଦୁଷ୍ମନ୍ତଙ୍କ ମିଳନରେ ପ୍ରକୃତିର ଅନୁରୂପ ବର୍ଣ୍ଣନାତୁଲ୍ୟ ବର୍ଣ୍ଣନା କବି ଏଠାରେ ପ୍ରଦାନ କରିଅଛନ୍ତି । ଏହି ଉଦ୍ଧୃତ ପ୍ରଥମ ପଦଟି ଗଙ୍ଗାଧରଙ୍କର ପ୍ରଣୟ-ବଲ୍ଲରୀର କେତୋଟି ପଦ ସ୍ମରଣ କରାଇ ଦେଇଥାଏ ।

"ଲଜ୍ଜା ବିରହିତ ସ୍ୱାର୍ଥ ବିଜଡ଼ିତ
କିଂଦର୍ପ ବନିତା ନାଟ
ପାଂରଣ୍ଡ ଶୋଭିତ ଲସ୍ୟ କେବେ କାହିଁ
ଦେଖିଥାନ୍ତି ସୁରରାଟ ।
ନ ପାରିଲେ ଦେଖି ଅଶ୍ୱିନୀ ପ୍ରଣୟ
ଚଳଚଞ୍ଚ ବିବସ୍ୱାନ
ଘନ-ପଲ୍ଲବିତ ତରୁ ଅନ୍ତରାଳ
ରକ୍ଷା କଲା ତାଙ୍କ ମାନ ।"

ପ୍ରକୃତି ବର୍ଣ୍ଣନାର ବିଭିନ୍ନ ପର୍ଯ୍ୟାୟରେ ରସିକ କବି ଅଭିମନ୍ୟୁ ଉପେନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ନ ହୋଇ ତାଙ୍କର ସ୍ୱାତନ୍ତ୍ର୍ୟ ସବିଶେଷ ପ୍ରତିପାଦନ କରିବାକୁ ଚେଷ୍ଟା କରି-ଅଛନ୍ତି । ଅଭିମନ୍ୟୁଙ୍କ କାବ୍ୟର ପ୍ରକୃତିରେ ଯଥେଷ୍ଟ ବୈଶିଷ୍ଟ୍ୟ ଓ ନିଜତ୍ୱ ରହିଛି । ପ୍ରେମଭକ୍ତିମୂଳକ କାବ୍ୟରେ ପ୍ରକୃତିର ଚିତ୍ର ଯେଉଁଠି ଯେତିକି ସ୍ଥାନ ଲଭ କରିବାର କଥା, ତେତିକି ହିଁ ମନୋଜ୍ଞ ଓ ଜୀବନ୍ତ ଭାବରେ ବିନ୍ୟସ୍ତ ହୋଇଛି ।

## ସୂକ୍ତି ମଧୁର କାବ୍ୟ ବିଦଗ୍ଧ ଚିନ୍ତାମଣି—

ଦୀନକୃଷ୍ଣଙ୍କର ରସକଲ୍ଲୋଳ କାବ୍ୟରେ ଯେପରି ମାନବ ଜୀବନର ବିଭିନ୍ନ ଅନୁଭୂତିମୂଳକ ସୂକ୍ତି ରହିଛି, ବିଦଗ୍ଧ ଚିନ୍ତାମଣିରେ ସେହିପରି ଛବିଳ ସୂକ୍ତି ପରିଲକ୍ଷିତ ହୋଇ ନ ଥାଏ । ବିଦଗ୍ଧ ଚିନ୍ତାମଣି ପ୍ରେମଭକ୍ତିମୂଳକ କାବ୍ୟ ହୋଇ-ଥିବାରୁ ତହିଁରେ ବିଶେଷ ଭାବରେ ପ୍ରେମ ସମ୍ବନ୍ଧୀୟ ସୂକ୍ତି ଏତେ ରହିଛି ଯେ, ଯେପରି ପଦାବଳୀ ଅନ୍ୟ କୌଣସି ଓଡ଼ିଆ କାବ୍ୟ କିଣ, ଅନ୍ୟ କୌଣସି ଭାରତୀୟ ସାହିତ୍ୟରେ ମଧ୍ୟ ଦୃଷ୍ଟିଗୋଚର ହୁଏ ନାହିଁ ।

ଏହି ସୂକ୍ତିଗୁଡ଼ିକରେ ଆଦୌ ମତଦ୍ୱୈଧ ନାହିଁ; କାରଣ ସେଗୁଡ଼ିକର ସୃଷ୍ଟିର ଚିରନ୍ତନ ସତ୍ୟ । ମଣିଷ ଜୀବନରେ ଏ ସତ୍ୟଗୁଡ଼ିକ ପ୍ରତି ପଦକ୍ଷେପରେ ଅନୁଭୂତ ହୋଇଥାଏ । କବି ପ୍ରେମତତ୍ତ୍ୱ ସମ୍ବନ୍ଧୀୟ ତତ୍ତ୍ୱଗୁଡ଼ିକ ବିଶ୍ଳେଷଣ କଲାବେଳେ ସେ ଗୌଡ଼ୀୟ ବୈଷ୍ଣବ ତତ୍ତ୍ୱଗ୍ରନ୍ଥ ଓ ଶ୍ରୀଚୈତନ୍ୟଚରିତାମୃତ ପ୍ରଭୃତି ରଚନା ଦ୍ୱାରା ପ୍ରଭାବିତ ହୋଇ ଥାଇପାରନ୍ତି; କିନ୍ତୁ ତହିଁରେ ତାଙ୍କର ମୌଳିକତା ଯଥେଷ୍ଟ ବେଶି ରହିଅଛି । ବିଦଗ୍ଧ ଚିନ୍ତାମଣି ହେଉଛି ଏକ ପ୍ରେମଭକ୍ତିମୂଳକ ଗ୍ରନ୍ଥ । ତେଣୁ ତହିଁରେ ଭକ୍ତିର ବିଚାର ସହିତ ପ୍ରେମଭକ୍ତି ସମ୍ବନ୍ଧୀୟ ବହୁ ତତ୍ତ୍ୱ ଆଲୋଚିତ ହୋଇଛି ।

ବିଦଗ୍ଧ ଚିନ୍ତାମଣିର ଯଦି କିଛି ବୈଶିଷ୍ଟ୍ୟ ଥାଏ, ତାହାହେଲେ ତାହା ହେଉଛି ପ୍ରେମତତ୍ତ୍ୱର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ । 'ବଡ଼ କଠିନ ସେ ପ୍ରୀତି ପାଳିବା । ତୀକ୍ଷ୍ଣ ଅସିଧାରେ ପଥ ଚାଲିବା' 'ବାରୁଦ ଅନଳ ପ୍ରାୟେ ପୀରତି । ସଂଯୋଗ କାରଣେ କରି ନୁହନ୍ତି ।' ବା 'ଲଜ୍ଜା ଥାଇ ଯେତେ । ପୀରତି ସୁନ୍ଦର ଦିଶଇ ତେତେ' ପ୍ରଭୃତି ସୂକ୍ତିମୂଳକ ପଦସମୂହ ଯୁଗ ଯୁଗ ଧରି ମାନବ ଜୀବନର ଚିରନ୍ତନ ସତ୍ୟ ହୋଇ ରହିଛି ।

କାବ୍ୟ କେବଳ ମନୋରଞ୍ଜନ ବା ଚିତ୍ତରେ ରସ ସୃଷ୍ଟି କରିବାରେ ନିବଦ୍ଧ ହେବା ଉଚିତ ନୁହେଁ । ଜୀବନର ବିଭିନ୍ନ ସତ୍ୟକୁ ପ୍ରତିଷ୍ଠା କରି ମାନବଜୀବନକୁ ଏକ ଆଦର୍ଶ ପଥରେ ଆଗେଇ ନେବା ତାହାର ଲକ୍ଷ୍ୟ ହେବା ଉଚିତ । ଏହି ଦୃଷ୍ଟିରୁ ବିଚାରକଲେ ବିଦଗ୍ଧ ଚିନ୍ତାମଣି ମାନବ ଜୀବନରେ ଶୁଦ୍ଧ ଅପ୍ରାକୃତ ପ୍ରେମ ଓ ମୈତ୍ରୀର ମହତ୍ ଆଦର୍ଶବାଦ ଉପସ୍ଥାପିତ କରିଥାଏ । ପ୍ରେମ ହିଁ ଜୀବନର ସର୍ବସ୍ୱ, ଯାହା ମନୁଷ୍ୟତାକୁ ଦେବତ୍ୱରେ ପରିଣତ କରାଇଥାଏ । ବିଦଗ୍ଧ ଚିନ୍ତାମଣିର ବିଭିନ୍ନ

ସୁକ୍ତି-ମଣିମାଳା ତାହାର ପ୍ରମାଣ । ନିମ୍ନରେ କାବ୍ୟର କେତେକ ସୂକ୍ତିର ଦୃଷ୍ଟାନ୍ତ ଦିଆଗଲା—

(୧) "ଅମ୍ବୁ ଯେହ୍ନେତ ଶାଳଗ୍ରାମେ ସ୍ନାନ
ଅଗ୍ରାହ୍ୟ କାହାର ପାଦୋଦକ ନାମେ ଜ୍ଞାନ ।" (୧।୩୧)

(୨) "ପ୍ରେମ ପଣପାକ ଧୀର ଘନ ଏରିସ୍ୟେତ
ପାଣି କ୍ଷୀର କ୍ଷାର ଦୁଇ କରନ୍ତ ଏକତ୍ୱ ହେ ।" (୧।୪୭)

(୩) "ମନ୍ଥର କବିତ୍ୱ ଦୋଷ ପସରରେ ଥାଇ
ମଜ୍ଜିବେ ନାହିଁ କି ଖଳେ ତାହା ନିନ୍ଦି ଧାଇଁ ।
ଯଥାଜାତ ବୃଦ୍ଧି ଶୁଣିପୁଚ୍ଛ ପ୍ରାୟେ ଘେନ
ଯଥୋଚିତ ନୋହେ ତାଙ୍କ ନିନ୍ଦନ ବନ୍ଦନ ।" (୧।୪୨)

(୪) "ରାହୁ ବଡ଼ ବୋଲିବା କି ବଧି ନିନ୍ଦ ହେଲେ
ରସ ନିନ୍ଦୁକେ ସେପରି ବୋଲନ୍ତି ଅଖିଳେ ।" (୧।୪୩)

(୫) "ମୁଁ ବୋଇଲି ବନେ ଯେବେ ଫୁଟଇ ସୁମନ
ମଧୁପକୁ ଲୁଚଇ କି ଏକଥା ନ ଘେନ ।" (୨୬।୧୧)

(୬) "ଅବ୍ୟୟ ଅକ୍ଷୟ ନିତ୍ୟ ପଦାର୍ଥ
କେ ଜାଣିବ ପ୍ରୀତି ଶବଦ ଅର୍ଥ ।" (୩୯।୩)

(୭) "ଯେ ଯେତେ ପରତେ ହୋଇସ୍ୟେ ପ୍ରୀତିକି
ସଂଯୋଗ ସୁଖ ସେ ଲଭେ ତେତିକି
ବିଯୋଗ କୋଟି ଗୁଣ ଦୁଃଖ ଦିଏ
ଏ ଦୁଇ ସ୍ୱଭାବ ତାର ଉଦୟେ ।
ଅନୁଭବୀ ବନେ
ଦୁଃଖସୁଖ କିଛି ନୋହେ ବନ୍ଧନେ ।" (୩୯।୧୧)

(୮) "କୋଟି ବ୍ରହ୍ମାଣ୍ଡ ଦୁଃଖ ସିନ୍ଧୁ ଲବ
ବିଚ୍ଛେଦ କାଳକୁ ତୁଲ ନ ହେବ ।" (୩୯।୧୨)

(୯) "ବଡ଼ କଠିନ ସେ ପ୍ରୀତି ପାଳିବା
ତୀକ୍ଷ୍ଣ ଅସିଧାରେ ପଥ ଚାଲିବା
ଶୂନ୍ୟ ଆରୋହଣଠାରୁ କଠିନ
ପବନ ଫାନ୍ଦେ ଧରିବା ଲକ୍ଷଣ
ପ୍ରୀତି ରକ୍ଷାଠାରେ
ଯଥା ପାରଦ ରଖିବା ମୁଠାରେ ।" (୩୦।୨୧)

(୧୦) "ଲଖ ଲେଡ଼ା ନବନୀତ ସୁଆର
ପ୍ରଚଣ୍ଡାନଳେ ପଥ ଚାଲିବାର ।

ତାହିଁ କି ବଳି ରହିବ ଶରୀର
ତହୁଁ ଅଧିକ ପ୍ରୀତି ପାଳିବାର ।" (୩୪।୨୨)

(୧୧) "ପ୍ରଥମେ ପ୍ରୀତି କରିବାର ମନ୍ଦ
ପର ପ୍ରୀତି କୋଟିଗୁଣେ ପ୍ରମାଦ
ଶୋଭାବନ୍ତ ଗୁଣବନ୍ତ ପୀରତି
ସେ ପୁଣି ପ୍ରମାଦେ ପ୍ରମାଦ ଅତି ।" (୩୪।୨୩)

(୧୨) "ବାରୁଦ ଅନଳ ପ୍ରାୟେ ପୀରତି
ସଂଯୋଗେ ବାରଣ କରି ନୁହଁନ୍ତି ।" (୩୪।୨୪)

(୧୩) "ବନ୍ଧାଇବ ଯେ ହାରରେ ଗୁଡିକ
ମତି ବଳାଇବ ସେହି ପ୍ରୀତିକି ।"(୩୪।୨୮)

(୧୪) "ନାରୀରେ ନାରୀ ପୁରୁଷେ ପୁରୁଷ
ରତି ସ୍ଥଳେ ପ୍ରୀତି ଦଶେ ନୀରସ ।" (୪୨।୧୧)

(୧୫) "ଲଜ୍ଜା ଥାଇ ଯେତେ । ପୀରତି ସୁନ୍ଦର ଦିଶଇ ତେତେ ।" (୪୨।୧୫)

(୧୬) ମନ ମୀନକୁ ସେ ପ୍ରେମ ବଡ଼ଶୀ । ଲୋଭ ସୂତ୍ରେ ବଳେ ନିଏ
ଆକର୍ଷି ।" (୪୨।୨୧)

(୧୭) "ପ୍ରେମ ପ୍ରେତଗ୍ରସ୍ତ । ମନ୍ତ୍ରଯନ୍ତ୍ରମାନ ନୋହେ ଆୟତ୍ତ ।" (୪୨।୩୬)

(୧୮) "ପ୍ରୀତି ମହାଖଣ୍ଡ । କେବଳ କରାଏ ପ୍ରାଣ ସଙ୍କଟ ।" (୪୨।୪୭)

(୧୯) "ଜୀବ ଥିବାଯାକେ । ଯାର ପ୍ରୀତିକି ତେଜିପାରିବ କେ ।" (୪୨।୨୪)

(୨୦) "ମନକୁ ମନ ଯେବେ ନ ମିଶିବ । ଘେନାଘେନି କି ପ୍ରୀତି ବୋଲାଇବ ।"
(୫୫।୩୫)

(୨୧) "ଜଠରାନଳ ମନ୍ଦ, ହେଲେ ହେବ ପ୍ରମାଦ, ଅଙ୍ଗଯିବ ଦୁର୍ବଳ ହୋଇ ।"
(୬୩।୨୪)

(୨୨) "ନିଷ୍ଠୁର ବଡ଼ ପୁରୁଷ ଜାତି । ପାଳନ୍ତି ନାହିଁ ତ ଯୁବତୀ ପ୍ରୀତି ।"
(୬୮।୨୮)

(୨୩) "ଲହରୀ ସିନ୍ଧୁର ସିନ୍ଧୁ ଲହରୀର କେ ବୋଲଇ
ଏହା ମନେକର ଗୋ ।" (୭୪।୧୩)

(୨୪) "ମୌକ୍ତିକ ଶୁକ୍ତିରେ କର୍ପୂର ରମ୍ଭାରେ ଗରଳ ବଢ଼ାଏ ଅହିଠାରେ ।"
(୭୪।୨୨)

(୨୫) "କୁମ୍ଭକାର ଉହା ହୋଏ ଅନ୍ତର୍ଦାହା ବାହ୍ୟ ପଙ୍କ ଦେଲେ
କେଉଁ ହିତ ଗୋ ।" (୭୪।୨୪)

(୨୬) "ଦେଖା ଦେଖି ପ୍ରୀତି । ଜଳକୃତ ରେଖାପରି ସ୍ଥିତି ।" (୯୪।୬)

(୨୭) "ବଳାତରେ ପ୍ରୀତି । ଲୌହ ପାଷାଣ ଯୋଗେ ଅଗ୍ନି ସ୍ଥିତି ।" (୯୪।୨୭)

(୨୮) "ଦୂର ନିକଟ ପରିଭରେ ନାହିଁ । ମନରୁ ମନ ପାଇଥାଇ ଯହିଁ ।
(୧୨।୩୨)

(୨୯) "ପ୍ରେମ ବଳେ ପ୍ରେମୀ ସଦା ଆଯତ୍ତ ।
ମାଦକୀ ଯେମନ୍ତେ ମାଦକେ ମତ୍ତ ।" (୧୪।୩୨)

(୩୦) "ପ୍ରେମ ହୃଦକନ ରାଗ ବିରାଗ । ଲୁଗ୍ନ ଥିଲେ ଫୁଟି ଦିଶେ ଆଗ ।"
(୧୨।୨୮)

ଏହିପରି ଅନେକ ସୂକ୍ତି-ବିଦଗ୍ଧ ଚିନ୍ତାମଣିର ବିଭିନ୍ନ ସ୍ଥଳରେ ପରିଦୃଷ୍ଟ ହୋଇଥାଏ । ଏହି ସୂକ୍ତି-ରତ୍ନରାଜି ଅଭିମନ୍ୟୁଙ୍କର ଅଭିନବ ସୃଷ୍ଟି । ଏସବୁ କେବଳ ବିଦଗ୍ଧ ଚିନ୍ତାମଣିର ସମ୍ପଦ ନୁହେଁ, ଓଡ଼ିଆ ସାହିତ୍ୟର ମଧ୍ୟ 'ଅମୂଲ୍ୟ ଅବ୍ୟୟ ଅକ୍ଷୟ ନିତ୍ୟ ସମ୍ପଦ ।'

## ଉପସଂହାର :

ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ହେଉଛନ୍ତି ଓଡ଼ିଆ ରୀତିସାହିତ୍ୟର 'ତ୍ରୟୀ' ଓ ଭକ୍ତକବି ଅଭିମନ୍ୟୁ ହେଉଛନ୍ତି ଭଞ୍ଜଯୁଗ ଶେଷ ପର୍ଯ୍ୟାୟର ଶ୍ରେଷ୍ଠତମ କବି । ରସିକ-ଭକ୍ତକବି ଭାବରେ ବିରାଟ ଆଲଙ୍କାରିକ ପଣ୍ଡିତ ଭାବରେ ମଧ୍ୟଯୁଗ ଓଡ଼ିଆ ସାହିତ୍ୟରେ ଅଭିମନ୍ୟୁଙ୍କର ସ୍ଥାନ ବହୁ ଉଚ୍ଚରେ । ତାଙ୍କ ଲେଖାରେ ଦୀନକୃଷ୍ଣ କାବ୍ୟର ଲାଳିତ୍ୟ, ଉପେନ୍ଦ୍ରଙ୍କ କବିତ୍ୱ ଓ ପାଣ୍ଡିତ୍ୟର ମଧୁର ସମନ୍ୱୟ ପରିଲକ୍ଷିତ ହୋଇଥାଏ । ତାଙ୍କର ଅମରକୃତି ବିଦଗ୍ଧ ଚିନ୍ତାମଣି ଏହାର ପ୍ରମାଣ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଖ୍ରୀ. ଷୋଡ଼ଶ ଶତାବ୍ଦୀରୁ ଶୁଦ୍ଧାଭକ୍ତିର ଧାରା ପ୍ରତିଫଳିତ ହୋଇଥିଲେ ହେଁ ଭକ୍ତିମାର୍ଗର ତାତ୍ତ୍ୱିକ କାବ୍ୟର ଉପଲବ୍ଧି ହେଉଥିଲା ଏବଂ ଅଭିମନ୍ୟୁଙ୍କ ଲେଖନୀରେ ତାହା ହିଁ ପରିପୂର୍ଣ୍ଣ ହେଲା । ବିଦଗ୍ଧ ଚିନ୍ତାମଣି ଏକ ଅସମ୍ପୂର୍ଣ୍ଣ କାବ୍ୟ ହେଲେ ହେଁ ତାହା ଆମ୍ଭମାନଙ୍କୁ ପୂର୍ଣ୍ଣତୁଲ୍ୟ ପ୍ରତୀୟମାନ ହୋଇଥାଏ; କାରଣ ଏହିଁରେ କାବ୍ୟର ଲକ୍ଷ୍ୟ ସାଧିତ ହୋଇଛି, 'ରାଧାକୃଷ୍ଣଙ୍କ'ର ମିଳନରେ ଏବଂ ଏହି ମିଳନ କାବ୍ୟର ପୂର୍ଣ୍ଣତା ଆନୟନ କରିଛି ।

ଦିବ୍ୟ-ଅଦିବ୍ୟ ଭାଷାରେ କାବ୍ୟଟି ରଚିତ ହୋଇଥିବାରୁ ତାହା ଓଡ଼ିଶାରେ ଉଭୟ ଶ୍ରେଣୀର ପାଠକ ଯଥା ଶିକ୍ଷିତ ତଥା ଅଶିକ୍ଷିତ ଶ୍ରେଣୀରେ ସମ୍ମାନିତ କାବ୍ୟ ରୂପେ ପ୍ରତିଷ୍ଠା ଅର୍ଜନ କରିଛି । ଭକ୍ତିଧର୍ମୀ ଗୌଡ଼ୀୟ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କ ବ୍ୟତୀତ କାବ୍ୟରସିକ କି ଶିକ୍ଷିତ ଅଶିକ୍ଷିତ ପ୍ରତ୍ୟେକଙ୍କ ପାଖରେ ବିଦଗ୍ଧ ଚିନ୍ତାମଣିର ମୂଲ୍ୟବୋଧ ରହିଛି ।

କେହି କେହି କହନ୍ତି "ଅଭିମନ୍ୟୁଙ୍କର ସେପରି କିଛି କବିପ୍ରତିଭା ନ ଥିଲା । ସେ ଉପେନ୍ଦ୍ର-ସୂର୍ଯ୍ୟାଲୋକ ଦୀପ୍ତ ଏକ ଉପଗ୍ରହ ମାତ୍ର ।" କିନ୍ତୁ ଏ ଉକ୍ତି ପୂରାପୂରି

ସତ୍ୟ ନୁହେଁ । କବି ଉପେନ୍ଦ୍ରଙ୍କ ରଚନାରେ ଏତେ ଉଦ୍‌ବୁଦ୍ଧ ଓ ତନ୍ମୟ ହୋଇ ପଡ଼ିଛନ୍ତି ଯେ ସ୍ଥଳବିଶେଷରେ ତାଙ୍କ କାବ୍ୟକବିତାରେ ଉପେନ୍ଦ୍ରଙ୍କର ପ୍ରଭାବ ପଡ଼ିଛି । ଏହାକୁ ତାଙ୍କର ଦୋଷ ନ କହି ତାଙ୍କର ଉପେନ୍ଦ୍ର ସାହିତ୍ୟ ଅନୁରକ୍ତିର ନିଦର୍ଶନ ମାତ୍ର । କବି ଉପେନ୍ଦ୍ରଙ୍କର କାବ୍ୟାଦର୍ଶ ଅନୁସରଣ କଲେ ହେଁ, ମୌଳିକ କଳ୍ପନାରେ କାବ୍ୟକୁ ପ୍ରାଣବନ୍ତ ଓ ସରସ କରିଅଛନ୍ତି । ଅଭିମନ୍ୟୁଙ୍କ କାବ୍ୟର ଲଳିତ ମଧୁର 'ପଦ୍ୟ-ଅପଦ୍ୟ ରଚନା ଶୈଳୀ', ବାସ୍ତବ ରସାଶ୍ରିତ ସରସ ସରଳ ଛାନ୍ଦ ଓ ପ୍ରେମତତ୍ତ୍ୱର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ପ୍ରଭୃତି ବୈଶିଷ୍ଟ୍ୟ ଉପେନ୍ଦ୍ର ବା ଦୀନକୃଷ୍ଣଙ୍କ କାବ୍ୟରେ ନାହିଁ । ଏହିସବୁ ଦୃଷ୍ଟିରୁ ଅଭିମନ୍ୟୁଙ୍କୁ ଉପେନ୍ଦ୍ରଙ୍କର ପଦାଙ୍କ ଅନୁସାରୀ କହିବା ଯୁକ୍ତିଯୁକ୍ତ ହେବ ନାହିଁ । ଯୁଗସ୍ରଷ୍ଟା କବିଙ୍କର ପ୍ରଭାବରେ ସେହି ଯୁଗର ଅନ୍ୟ କବିମାନେ ଅଳ୍ପାଧିକ ଭାବରେ ପ୍ରଭାବିତ ହେବା ସ୍ୱାଭାବିକ ଏବଂ ଏହି ଦୃଷ୍ଟିରୁ ଅଭିମନ୍ୟୁ ଉପେନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି, କିନ୍ତୁ ସ୍ୱପ୍ରତିଭାରେ ସେ ଦୀପ୍ତିମନ୍ତ । ଏହା ମଧ୍ୟ ସତ୍ୟ ଯେ କବି ତାହାର କାବ୍ୟକବିତା ରଚନାରେ ସାଧାରଣତଃ ସେ ତାହାର ପୂର୍ବବର୍ତ୍ତୀ କବିମାନଙ୍କର ଭାବଧାରାରେ ଅଳ୍ପାଧିକ ଭାବରେ ପ୍ରଭାବିତ ହୋଇଥାଏ । ଉପେନ୍ଦ୍ର ମଧ୍ୟ ତାଙ୍କର ପୂର୍ବବର୍ତ୍ତୀ ଓଡ଼ିଆ କବି ଶିଶୁଶଙ୍କର, ଧନଞ୍ଜୟ ଭଞ୍ଜ, ବିଷ୍ଣୁ ଦାସ ଓ କାଳିଦାସ, ମାଘ ପ୍ରଭୃତି କାବ୍ୟ କବିତା ଦ୍ୱାରା ଅନୁପ୍ରାଣିତ ହୋଇଅଛନ୍ତି । ସେଥିପାଇଁ ଉକ୍ତି ରହିଛି ଯେ ବିନା ଆଶ୍ରୟରେ କବିତା ବନିତା ଓ ଲତା ବଢ଼ିପାରନ୍ତି ନାହିଁ ।

ଯେ ଯାହାହେଉ ନା କାହିଁକି, ଭାବର ଗାମ୍ଭୀର୍ଯ୍ୟ, ଭାଷାର ଲାଳିତ୍ୟ ଓ ଆଲଙ୍କାରିକତା, ରାଗରାଗିଣୀ ଯୁକ୍ତ ପ୍ରାଚୀନ ଛାନ୍ଦଗୁଡ଼ିକର ସଙ୍ଗୀତମୟତା, ସୁମଧୁର କଳ୍ପନାବିଳାସ ଓ ପ୍ରେମଭକ୍ତି ରସର ଉଚ୍ଛୁଳ ପ୍ଲାବନ ପ୍ରଭୃତି ବିଭିନ୍ନ ବିଭାବରେ ବିଦଗ୍ଧ ଚିନ୍ତାମଣି ମଣିତୁଲ୍ୟ । ଓଡ଼ିଆ ସାହିତ୍ୟରେ ତାହାର ଚରଣାଶ୍ରିତପ୍ରଭା ଯୁଗେ ଯୁଗେ ବିକୀରଣ କରିଆସୁଛି ।

●